# ରହସ୍ୟବାଦ
# ଓ
# କାବ୍ୟ ସଞ୍ଚୟନ

ଲକ୍ଷ୍ମୀଧର ସିଂହ

ପ୍ରକାଶକ
ଶ୍ରୀ ଲକ୍ଷ୍ମୀଧର ସିଂହ
'ଝୋଲି ସାହି,
କଟକ

ପ୍ରଥମ ମୁଦ୍ରଣ—ଏକହଜାର
ଜାନୁଆରୀ—୧୯୫୭
ମୂଲ୍ୟ—ଛ' ଅଣା

ମୁଦ୍ରାକର
ଶ୍ରୀ ନବକିଶୋର ମହାପାତ୍ର
ରାଜନ ପ୍ରେସ, କଟକ

Digitized by srujan ka@gmail.com

# ଆଦ୍ୟ କଥନୀ

ବି: ଏ: ରେ କାବ୍ୟସଞ୍ଚୟନ ପଢ଼ା ହେଲାବେଳେ ତନ୍ନିହିତ ରହସ୍ୟବାଦର ସ୍ଥିତି ସମ୍ପର୍କରେ ନାନା ବାଦାନୁବାଦ ଓ ଯୁକ୍ତିତର୍କ ଫଳ ମତଦ୍ୱୈଧ ପରିସ୍ଥିତିମାନ ସୃଷ୍ଟିହେବା ଗୋଟିଏ ଚଳଣିରେ ପରିଣତ ହେଲାଣି । ଏ ସମସ୍ୟାକୁ ଏଡ଼ାଇବାପାଇଁ ମୁଁ ରହସ୍ୟବାଦ ଉପରେ ଯେଉଁ ପ୍ରବନ୍ଧଟା ଲେଖି ଅଧ୍ୟାପକ ଶ୍ରୀ ବଂଶୀଧର ମହାନ୍ତିଙ୍କୁ ଦେଇଥିଲି, ସେ ତାର ଆବଶ୍ୟକତା ସମ୍ପର୍କରେ ଉଚ୍ଚ ମତ ପ୍ରକାଶ କରି ପ୍ରବନ୍ଧଟି ଛପିବାପାଇଁ ମତେ ପ୍ରାଥମିକ ପ୍ରେରଣା ଦେଲେ । ପ୍ରକାଶନର ସ୍ୱାତନ୍ତ୍ର୍ୟ ହେତୁ ଏଥିରେ କାବ୍ୟସଞ୍ଚୟନ ଓ ପାଠ୍ୟ ନିର୍ଘଣ୍ଟରେ ଥିବା ଦଶଟି କବିତା ବିଷୟରେ ମଧ୍ୟ ଆଲୋଚନା କରିବାଟା ମୋତେ ଯୁକ୍ତିଯୁକ୍ତ ମନେ ହେଲା ଏବଂ ଏ ସବୁର ସମାନ୍ତରାଳ ସମୀକ୍ଷା ହେଲାବେଳକୁ ସବୁଜଯୁଗ ଆପେ ଆପେ ଏ ଭିତରକୁ ଆସିଲା ।

କାବ୍ୟସଞ୍ଚୟନ ନିଜେ ବୁଝି ଅନ୍ୟକୁ ବୁଝେଇ ପାରିବାର ଶକ୍ତି ଅର୍ଜନ କରିବାରେ ରେଭେନ୍ସା କଲେଜର ଓଡ଼ିଆ ବିଭାଗର ବିଭିନ୍ନ ଅଧ୍ୟାପକଙ୍କଠାରୁ ମୁଁ ସାହାଯ୍ୟ ଗ୍ରହଣ କରିଛି । ସେମାନଙ୍କ ନିକଟରେ ମୁଁ ଋଣୀ । ମତଦ୍ୱୈଧ ପରିସ୍ଥିତିମାନଙ୍କରେ ମୁଁ ମୋ ନିଜ ମତ ଦ୍ୱାରା ଚାଳିତ ହୋଇଛି ।

ଟ୍ରେନିଂ କଲେଜର ଅଧ୍ୟାପକ ପ୍ରାଣବନ୍ଧୁ କରଙ୍କ ସହୃଦୟତା ଭୁଲି ପାରିବି ନାହିଁ । ମୋର ମନଇଚ୍ଛାକୁ ଚରିତାର୍ଥ କରିବାରେ ସେ ଯତ୍ପରୋନାସ୍ତି ଚେଷ୍ଟା କରିଛନ୍ତି । ସବୁଜଯୁଗ ସମ୍ବନ୍ଧରେ ମୋର ଅସ୍ପଷ୍ଟ ଧାରଣାକୁ ସ୍ପଷ୍ଟ କରିବାରେ ସେ ମତେ ସାହାଯ୍ୟ କରିବା ଛଡ଼ା ବିଭିନ୍ନ ପତ୍ରିକା ମଧ୍ୟ ସଂଗ୍ରହ କରି ଦେଇଛନ୍ତି । ତାଙ୍କର ସ୍ନେହ, ସହାନୁଭୂତିକୁ ପ୍ରକାଶ କରିବା ପାଇଁ ମୋର ଭାଷା ନାହିଁ ।

ଆର୍ଥିକ ସାହାଯ୍ୟ ଦେଇ ଯେଉଁ ବନ୍ଧୁମାନେ ମୋର ଏ ଉଦ୍ଦେଶ୍ୟକୁ ସଫଳକାମ କରାଇବାରେ ଆନ୍ତରିକତା ଦେଖାଇଛନ୍ତି ସେମାନଙ୍କ ନିକଟରେ ମୁଁ ଅବନତ । ବନ୍ଧୁ ସୁରେନ୍ଦ୍ର ମୋହନ ସ୍ୱତଃ-ପ୍ରବୃତ୍ତ ହୋଇ ଏ ପୁସ୍ତକର ଉପୋଦ୍‌ଘାତ ଲେଖିଦେଇଥିବାରୁ ତାଙ୍କୁ ଧନ୍ୟବାଦ । ପରିଶେଷରେ ମୋ ଦେଶର ପାଠକ ପାଠିକା ବିଶେଷତଃ ବି:ଏ: କ୍ଲାସ ଛାତ୍ରୀମାନଙ୍କୁ ମୋର ଅନୁରୋଧ, ରଚନାରେ ଯଦି କିଛି ଅସଙ୍ଗତ ଦୋଷ ପାଏ, ଦୟାକରି ଦେଖାଇଦେଲେ ପୁସ୍ତକର ଦ୍ୱିତୀୟ ମୁଦ୍ରଣ ସମୟରେ ତାହା ସୁଧାରିବାକୁ ଚେଷ୍ଟା କରିବି । ଇତି ।

ମକର ସଂକ୍ରାନ୍ତି<br>ଝୋଲାସାହି, ଜାନୁଆରୀ, ୧୯୫୬ } ଶ୍ରୀ ଲକ୍ଷ୍ମୀଧର ସିଂହ<br>ଲେଖକ

# ଉତ୍ସର୍ଗ

ସୁଜନ,

ଉନିବର୍ଷ ତଳର ଜୀବନର ସ୍ୱାତନ୍ତ୍ର୍ୟ ଆଜି ଆମେ ହରେଇଲେ ; ହୁଏତ ତା'ଠାରୁ ଯେ ଅଧିକ ସୁଖର ଏକ ଜୀବନକୁ ସ୍ୱାଗତ ଜଣେଇବା ପାଇଁ ଅପେକ୍ଷା ନ କରୁଛ, ତା' କିଏ କହିବ?

ଆଲୋଚନା ସାହିତ୍ୟ ଜଗତକୁ ପଶିବାକୁ ଭଲ ଲାଗେ, [illegible] ମୋ ଲେଖା, ସେଥିପାଇଁ କେତେଥର ତୁମର ଉତ୍କଣ୍ଠା- ଦୃଷ୍ଟି ମୁଁ ଲେଖିଦେଇଛୁ । ଲେଖିବା ପାଇଁ ତ ପ୍ରେରଣା ତୁମେହିଁ ଦେଉ......ଛ

ତୁମର ପ୍ରେରଣାପୁଷ୍ଟ ଏଇ ସମାଲୋଚନା ପୁସ୍ତକଟି ତୁମର ହାତରେ ଆଜ ପ୍ରଥମେ ଦେଲି, ଏହାର ମୂଲ୍ୟ ତୁମେହିଁ ନିର୍ଦ୍ଧାରଣ କରିବ ।

ତୁମର
ଜୀବନ

# ଉପୋଦ୍‌ଘାତ

ମୋର ବନ୍ଧୁ, ଧୂଳିଖେଳର ବନ୍ଧୁ, ଶ୍ରୀ ଲକ୍ଷ୍ମୀଧର ସିଂହଙ୍କର 'ରହସ୍ୟବାଦ ଓ କାବ୍ୟସଞ୍ଚୟନ' ଶିରୋନାମାର ଏକ ସମାଲୋଚନା ପୁସ୍ତକର ପାଣ୍ଡୁଲିପି ଦେଖିଲି । ସେ ବହିରେ ସମାଲୋଚକ ସବୁଜ ଯୁଗର ଏକ ମୋଟାମୋଟି ଆଭାସ, ରହସ୍ୟବାଦର ସ୍ୱରୂପ ନିର୍ଣ୍ଣୟ, ରହସ୍ୟବାଦୀ ହିସାବରେ ବୈକୁଣ୍ଠନାଥଙ୍କ ସ୍ଥାନ କେଉଁଠି ଓ ଶେଷରେ ବି. ଏ. ପାଠ୍ୟ ନିର୍ଘଣ୍ଟରେ ଥିବା ଦଶଟି କବିତାର ଆଲୋଚନା କରିଛନ୍ତି । ଏସବୁ ତା ମଧ୍ୟରେ ଯେତିକି, ଯେପରି ଭାବରେ ଆଲୋଚନା କରିଛନ୍ତି, ତାହା ତାଙ୍କର ଭବିଷ୍ୟତ ଉପରେ ସେତିକି ଆସ୍ଥା, ବିଶ୍ୱାସ ରଖିଛି—ଏ ସମ୍ପର୍କରେ ମତଦ୍ୱୈଧର କୌଣସି ପ୍ରଶ୍ନ ନାହିଁ । କାରଣ ସବୁଜ ଯୁଗ ଏ ସାହିତ୍ୟରେ ସତ କି ମିଛ ତାହା ବୁଢ଼ୀମାନଙ୍କ ବୁଢ଼ୀ ଅସୁରୁଣୀ କାହାଣୀ ଭଳିଆ । ଏହାର ବିଶେଷ ବିଶ୍ଳେଷଣ ମୁଁ ସବୁଜଯୁଗ ଓ ବୈକୁଣ୍ଠନାଥରେ ଦେଇଛି । ଓଡ଼ିଆ ସାହିତ୍ୟରେ ବର୍ତ୍ତମାନ ନଏ ମା, ନଏ ବୋପା କଣ୍ଠ ହେବନି; ଯେହେତୁ ଏ ବାୟୁମଣ୍ଡଳ ତଥାକଥିତ ବୋଲାଯାଉଥିବା ସବୁଜପନ୍ଥୀମାନେହିଁ ସୃଷ୍ଟିକରି ଏ କଥାର ଜଳନ୍ତା ନିଆଁରେ କୁଟା ପକେଇଛନ୍ତି ।

ଶେଷରେ ଏଥର ସମାଲୋଚକ ବନ୍ଧୁ ଲକ୍ଷ୍ମୀଧର ଯେଉଁ ପ୍ରୟାସ କରିଛନ୍ତି ତାହା ପ୍ରଶଂସନୀୟ ଏବଂ ମୋ ତରଫରୁ ତାଙ୍କୁ ଅନୁରୋଧ ଓଡ଼ିଆ ସାହିତ୍ୟର ଏ ଦୁର୍ଦ୍ଦିନରେ ସେ ନିଜର ଅନ୍ୟାନ୍ୟ ମୌଳିକ ଚିନ୍ତାଧାରା ଦ୍ୱାରା ଆଉ କେତୋଟି ସମାଲୋଚନା ପୁସ୍ତକ ପ୍ରକାଶ କରି ତାଙ୍କ ମତର ପରିପ୍ରସାର ଓ ପରିବର୍ଦ୍ଧନ କରନ୍ତୁ । ଇତି ।

ଶ୍ରୀ ମୁରଲୀ ମୋହନ ଜେନା

# ରହସ୍ୟବାଦ

Mysticism ବା ତଥାକଥିତ ରହସ୍ୟବାଦର କୌଣସି ନିର୍ଦ୍ଦିଷ୍ଟ ବ୍ୟାବହାରିକ ଅର୍ଥ ନାହିଁ ବୋଲି ଆମର ମନେ ହୁଏ । Mysticism ଏହି ଇଂରାଜୀ ଶବ୍ଦଟିକୁ ଓଡ଼ିଆର ବିଭିନ୍ନ ସାହିତ୍ୟ-ବେତ୍ତାମାନେ ବିଭିନ୍ନ ଶବ୍ଦରେ ଅନୁବାଦ କରି ବିଭିନ୍ନ ଅର୍ଥରେ ପ୍ରୟୋଗ କରି ଅଛନ୍ତି । ଅର୍ଥଗତ ତାରତମ୍ୟ ଲକ୍ଷ୍ୟ କରି ତହିଁରେ ଯେତେ ନୂତନତାର ଆରୋପ କରାଗଲେ ମଧ୍ୟ Mysticism ଏପରି ଏକ ଜିନିଷ ଯାହା କେବଳ ଅନୁଭବ କରି ହେବ, କିନ୍ତୁ ପ୍ରକାଶ ବା ବୋଧର ଅଗମ୍ୟ । ତଥାପି ପରମ୍ପରାଗତ ଚଳଣି ଅର୍ଥରେ ଜୀବାତ୍ମା ଓ ପରମାତ୍ମାର ମିଳନର ବ୍ୟଗ୍ରତାକୁ ରହସ୍ୟବାଦ କୁହାଯାଏ ବୋଲି ଧରିବାକୁ ହେବ । କାରଣ ରହସ୍ୟମୟ ଆବହାଓ୍ୱା ସେତିକିବେଳେ ସୃଷ୍ଟି ହୁଏ, ଯେତେବେଳେ ମନୁଷ୍ୟ ସାଧାରଣ ଜୀବନ ସୀମାର ଉର୍ଦ୍ଧ୍ୱରକୁ ଗତିକରି ଜୀବନକୁ ଏକ ସମ୍ପୂର୍ଣ୍ଣ ନୂତନ ଦୃଷ୍ଟିଭଙ୍ଗୀରୁ ପର୍ଯ୍ୟାଲୋଚନା କରି ଆଧ୍ୟାତ୍ମବାଦର ଆଶ୍ରୟ ନିଏ । ସେଥିପାଇଁ କେହି କେହି କହନ୍ତି ଯେ ପାରମ୍ପରିକ ଭାବରେ ଗୋଟାଏ ବସ୍ତୁକୁ ନ ଦେଖି ଭାବଦ୍ୱାରା ଅନୁପ୍ରାଣିତ ହେବା ବା ଗୋଟାଏ ନୂତନ ଦୃଷ୍ଟିଭଙ୍ଗୀରୁ ତାହାକୁ ଦେଖିବା ହିଁ ରହସ୍ୟବାଦ । ତେଣୁ ଆମେ ଯଦି ଗୋଟାଏ ନବପୁଷ୍ପିତ କଳିକାକୁ ଦେଖି ସାଧାରଣ କଳିକା ପରି ନ ଭାବି ବା

ସାଧାରଣ ଇନ୍ଦ୍ରିୟ ପରି- ତାହାକୁ ବୃନ୍ତଚ୍ୟୁତ ନ କରି ବା ତାହାର ମଧୁର ଗନ୍ଧରେ ଆତ୍ମହରା ନ ହୋଇ ତା'ର ସ୍ରଷ୍ଟାର ଅଲୌକିକତା ସମ୍ବନ୍ଧରେ ଶ୍ରଦ୍ଧାପ୍ରବଣ ହେଉ ବା ତାର ସ୍ରଷ୍ଟାର ସୃଜନ ଶକ୍ତିକୁ ତାରିଫ୍ କରି ନିଜ ଜୀବନ ସହିତ ତା'ର ତୁଳନାତ୍ମକ ବିଚାର କରୁ, ତାହାହିଁ ହେବ ରହସ୍ୟବାଦ । କେହି ଯଦି ପ୍ରଣୟୀ କୌଣସି ସୁପୁଷ୍ପିତ କୁସୁମର ଅଙ୍ଗ ବିକାଶକୁ ନିଜ ପ୍ରଣୟିନୀର ପ୍ରସ୍ଫୁଟିତ ଯୌବନ ସହିତ ତୁଳନା କରେ ଏବଂ ପୁଷ୍ପ ଶ୍ରୀର କ୍ଷଣସ୍ଥାୟୀତ୍ୱ ସହିତ ନିଜ ପ୍ରିୟାର ଉଦ୍ଦାମ ଯୌବନର ତୁଳନାତ୍ମକ ବିଚାରକରି ମ୍ରିୟମାଣ ହୁଏ, ତେବେ ତାର ମାନସର ଆନ୍ଦୋଳିତ ଚିନ୍ତାଧାରାକୁ ମଧ୍ୟ ରହସ୍ୟବାଦୀୟ ଚିନ୍ତାଧାରା ବୋଲି କୁହାଯିବ ।

କେହି କେହି କହନ୍ତି ଶକ୍ତି ଓ ଜଗତର ସମ୍ପର୍କ ହିଁ ରହସ୍ୟବାଦ । ଏହି ଉକ୍ତିକୁ ବିଶ୍ଳେଷଣ କଲେ ଆମେ ଦେଖିବାକୁ ପାଇବା ସୃଷ୍ଟିର ସୃଜନ ରହସ୍ୟ, କାମ୍ୟ ଓ କାମ୍ୟର ଆକର୍ଷଣ, ଶରୀର ସହିତ ଶରୀର ମିଳନର ବ୍ୟଗ୍ରତା, ନାରୀ ସହିତ ପୁରୁଷର ମିଳନର ଉତ୍କଣ୍ଠା—ଯେଉଁଠାକି ସୃଷ୍ଟିର ଚିରନ୍ତନ ସତ୍ୟ । ବର୍ତ୍ତମାନର ବସ୍ତୁବାଦ ସଭ୍ୟତା ଏବଂ ସେ ସଭ୍ୟତା'ର ଅଗ୍ର-ଗତିର ଅନ୍ତରେ ଯେ ସେହି ଚିରନ୍ତନ ରହସ୍ୟବାଦ ଉପରେ ଭିତ୍ତିକରି ଗଢ଼ି ଉଠିଛି, ଏହା କୌଣସି ସଜ୍ଞାନବ୍ୟକ୍ତି ଅସ୍ୱୀକାର କରିପାରିବ ନାହିଁ ।

ତଥାପି କାହିଁକି ଯେ ରହସ୍ୟବାଦ (ବା ବୋଧବାଦ ବା ଦୈନ୍ୟବାଦ)କୁ ବ୍ୟକ୍ତିଗତଭାବେ ଏତେ ସଙ୍କୀର୍ଣ୍ଣ ରୂପ ଦିଅନ୍ତି ବୁଝି ହୁଏନା । କେହି କେହି କହନ୍ତି ସାଧାରଣ ଜୀବନ ଚିନ୍ତାରେ ଇନ୍ଦ୍ରିୟାତୀତ ସୃଷ୍ଟିକୁ ରହସ୍ୟବାଦ କୁହାଯାଏ ; ଯେଉଁଠାକି

Blakeଙ୍କର Belief in the Spiritual apprehension of truth beyond the understanding is Mysticism ଉକ୍ତିକୁ ପ୍ରତ୍ୟକ୍ଷରେ ସମର୍ଥନ କରେ । ପୁଣି ଏହି ଅର୍ଥରେ ରହସ୍ୟ-ବାଦକୁ ପ୍ରାଞ୍ଜଳ ଓ ସରଳ କହିବାକୁ ଯାଇ Kuldev Sawhney ତାଙ୍କର Mysticism in Poetry ପ୍ରବନ୍ଧରେ କହନ୍ତି "Mysticism might be explained as a spiritual communion, a condition in which the soal soars away from the trammels of the body and attends one ness with the divine spirit" (Careers and Courses October '54) ଯାହାକ କେତେକାଂଶରେ "ଜୀବାତ୍ମା ଓ ପରମାତ୍ମାର ମିଳନର ବ୍ୟଞ୍ଜନାତ୍ମକ ରହସ୍ୟବାଦ" ସଜ୍ଞାର ଏକ ସମ୍ପ୍ରସାରିତ ରୂପ ବୋଲି ମନେ ହୁଏ ।

ତେବେ ସେ ଯା ହେଉ, ରହସ୍ୟବାଦ ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ଆଣିବାକୁ ହେଲେ ଆମକୁ ଆତ୍ମା ଓ ପରମାତ୍ମା ସମ୍ବନ୍ଧରେ ସମ୍ୟକ୍ ଜ୍ଞାନଲାଭ କରିବାକୁ ହେବ । ରହସ୍ୟବାଦର ସ୍ୱରୂପ ଏବଂ ସାହିତ୍ୟରେ ତାହାର ପ୍ରକୃତି ସମ୍ବନ୍ଧରେ ଆଲୋଚନା କରିବାକୁ ହେଲେ ଆମକୁ ଅତି ପ୍ରାଚୀନ ସ୍ତରକୁ ଫେରି ଯିବାକୁ ପଡିବ ; ଯେଉଁଠାରେ କି ଆମେ ଦେଖିବା ଦେହସାଧନାର ଆତ୍ମା ସହିତ ପରମାତ୍ମାର ସମ୍ବନ୍ଧର ପ୍ରକୃତ ମାର୍ଗ । ଦେବାନନ୍ଦ ଦାସ ବୈଚନ୍ଦ୍ର ଗୀତାରେ କହନ୍ତି—

ଭେଦିଣ ଷଡ଼ଚକ୍ର ଦେଇ, ସଙ୍ଗତେ ଅଣଗୁଣ ବାଇ ॥
କାଉଁଖ ମଣ୍ଡଳ ଭୁବନ, ଚନ୍ଦ୍ର ସୂର୍ଯ୍ୟଙ୍କ ନିଜ ସ୍ଥାନ ॥
+ + +
ଆତ୍ମାକୁ ଯୋଗମାର୍ଗେ ନେଇ, ତେତେକ ସ୍ଥାନ ବଳ ଯାଇ ॥
......ଇତ୍ୟାଦି ( ବୈଚନ୍ଦ୍ର ଗୀତା, ଷଷ୍ଠ ଅଧ୍ୟାୟ )

ଆତ୍ମା ଏବଂ ପରମାତ୍ମା ଉଭୟ ଏକ ରହସ୍ୟମୟ ପରିବେଶ ମଧ୍ୟରେ ଗତି କରନ୍ତି, ଉଭୟଙ୍କ ବ୍ୟବଧାନ ଯେ କେତେ ସ୍ପଷ୍ଟ ଏବଂ ଜୀବାତ୍ମା ପରମାତ୍ମା ସହିତ ବିଲୀନ ହୋଇଯିବାକୁ ଚାହିଁଲେ ବି ଯେ କିପରି ପଥଭ୍ରଷ୍ଟ ହୁଏ, ତାହା ସୂଚାଇ ଦେବାକୁ ଯାଇ ଅଚ୍ୟୁତ ଦାସ ତାଙ୍କର ଛୟାଳିଶ ପଟଳରେ କହନ୍ତି,

କପୋଳ ଅଟେ କାଉଁସ ପାଟଣା, ଯୋଗୀମାନେ ତହିଁ ହୁଅନ୍ତି ବଣା,
ତହିଁ ଉପରେ ଗୋଲ ହାଟ ଥାଇ, ସେ ହାଟକୁ ଅଜ୍ଞାନ ନ ଗମଇ
.........ଇତ୍ୟାଦି (ଦ୍ୱାବିଂଶ ପଟଳ)

ଯାହାର ସମର୍ଥନ କି ଆମେ ଛତିଶ ଗୁପ୍ତ ଗୀତାରେ ଦେଖିବାକୁ ପାଉଁ। ବଳରାମ ଦାସ ଲେଖିଛନ୍ତି—

ଯହିଁ ପଶିଲେ ମନ ବୁଦ୍ଧି ହଜଇ···
ତହିଁ ଉପରେଟି ଶ୍ରୀହଟ ପାଟଣା ବଟାଟ ଯେଉଁ ଭୁବନ···
.........ଇତ୍ୟାଦି [ଦ୍ୱାତ୍ରିଂଶ ଅଧ୍ୟାୟ]

ଉତ୍କଳର ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି—"ସମସ୍ତ ଗୃହାଣି ଓ ଚଳଣି ଭିତରେ ଜୀଇଁବା ଓ ଭୋଗ କରିବା ଏହାହିଁ ଯଦି ଜୀବନର ଲକ୍ଷ୍ୟ ହୁଏ, ତେବେ ଏଇ ଜୀଇଁବାକୁ ଅନନ୍ତ ସୁଖମୟ କରିବାକୁ ହେବ। ସେଥିପାଇଁ ଏବଂ ସାଂସାରିକ ଜଞ୍ଜାଳରୁ ନିତ୍ୟ ନିସ୍ତାର ପାଇବାପାଇଁ ଆତ୍ମା, ଈଶ୍ୱର ଏବଂ ଶୂନ୍ୟବାଦ ଉପରେ ଆସ୍ଥା ସ୍ଥାପନ କରିବାକୁ ହେବ। ଓଡ଼ିଆ ଧର୍ମରେ ବା ଦର୍ଶନରେ ରହସ୍ୟବାଦ ବୁଝିବା ଏକ କଠିନ ବ୍ୟାପାର। ଅନ୍ୟାନ୍ୟ ସାହିତ୍ୟ ଓ ଧର୍ମପର ରହସ୍ୟବାଦ ପ୍ରକାଶ ସ୍ଥଳରେ ଏଥିରେ ଅହେତୁକ ଯୌନଚର୍ଯ୍ୟା ଫୁଟିନାହିଁ। ଶୂନ୍ୟ ହେଉଛି ଅବ୍ୟକ୍ତ। ଶୂନ୍ୟରୁ ବ୍ରହ୍ମ ଓ

ଓଁକାର ହାତେ ସୃଷ୍ଟିର ପ୍ରକାଶ । ଚୈତନ୍ୟନାଶ ସଙ୍ଗେ ବ୍ୟକ୍ତ ପ୍ରକାଶ ମଧ୍ୟ ବୁଝିବାକୁ ହୁଏ । ଓଁକାର ହେଉଛି ବ୍ରହ୍ମର ରୂପାନ୍ତର । ବୈଦିକ ସାହିତ୍ୟରେ ଓଁକାର ହେଉଛି ବ୍ରହ୍ମର ସଙ୍କେତ । ଗୀତା ଆଦି ସଂସ୍କୃତ ଦର୍ଶନରେ ମଧ୍ୟ ବ୍ରହ୍ମ ତିନୋଟି ଅର୍ଥରେ ବ୍ୟବହୃତ ହୁଏ—ଅବ୍ୟକ୍ତ ପରମାତ୍ମା ବା ଅଣାକାର ବା ମହାଶୂନ୍ୟ ଏବଂ ମହତ୍ ବ୍ରହ୍ମ ବା ପ୍ରକୃତି ଓ ଶବ୍ଦବ୍ରହ୍ମ ବା ସେହି ଓଁକାର । ଓଁକାରର ଏ ଦର୍ଶନ ତତ୍ତ୍ୱର ମୂଳ ବର୍ତ୍ତମାନ ସଭ୍ୟତାର ବହୁ ଦୂରରେ । ନିର୍ବାଣଲବ୍ଧ ନାମ-ମନ୍ତ୍ର-ସାଧନ ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ । (ଓଡ଼ିଆ ସାହିତ୍ୟର କ୍ରମ ପରିଣାମ)

ସେ ଯା' ହେଉ, ଯେଉଁ ଦୃଷ୍ଟିକୋଣରୁ ଆମେ ରହସ୍ୟ-ବାଦକୁ ବିଶ୍ଳେଷଣ କଲେ ମଧ୍ୟ ରହସ୍ୟବାଦ ଯେଉଁ ଅଭିବ୍ୟକ୍ତିକୁ ବୁଝାଏ, ତାହା ଯେ କୌଣସି ଆଲୋଚ୍ୟ ଲେଖାରେ ଯେ ଥିବ ଏହାର କୌଣସି ଅର୍ଥ ନାହିଁ । କାରଣ ଅନେକ ସମୟରେ, ଅନେକ ଲେଖାରେ ରହସ୍ୟବାଦ ନ ଥିଲେ ମଧ୍ୟ ଆଲୋଚନାର ଦୃଷ୍ଟିଭଙ୍ଗିରୁ ତହିଁରେ ରହସ୍ୟବାଦର ଆରୋପ କରାଯାଇ ପାରେ । ଧରନ୍ତୁ କୌଣସି ଉପପତି କୌଣସି ଅଭିସାରିକାର ଉଦ୍ଦାମ ଯୌବନ-ଜନିତ ଶରୀର ଶୋଭା ସନ୍ଦର୍ଶନରେ ଆତ୍ମବିଭୋର ହୋଇପଡ଼ିଲା । ରକ୍ତମାଂସର ଶରୀରପ୍ରତି ଯେ ଆଉ ଗୋଟାଏ ରକ୍ତମାଂସର ଶରୀର ଆକୃଷ୍ଟ ହେବ ଏହା ଏକ ସାଧାରଣ କଥା ହେଲେ ମଧ୍ୟ ଏବଂ ଏ ପ୍ରକାର ଯୌନସ୍ପୃହା ସବୁକ୍ଷେତ୍ରରେ ପ୍ରଣୟୀ ପ୍ରଣୟିନୀଙ୍କର ଥିଲେ ମଧ୍ୟ ଆମେ ଯଦି ଏହାକୁ ସାଧାରଣ ଦୃଷ୍ଟି କୋଣରୁ ଆଲୋଚନା ନକରି ଏହାପ୍ରତି କୌଣସି ସ୍ୱାତନ୍ତ୍ର୍ୟର ଆରୋପ କରୁ, ତା ହେଲେ କହିବୁ, ଉପପତି ଅଭିସାରିକାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଅଭିଭୂତ ହେଲା । କାରଣ ସେ ଭାବୁଥିଲା ଏପ୍ରକାର ଅନବଦ୍ୟ

ସୌନ୍ଦର୍ଯ୍ୟର ସୃଷ୍ଟି ଯାହାଙ୍କ କରଣୀ ଭିତରେ, ସେ ନିଜେ କେତେ ସୁନ୍ଦର ହୋଇ ନଥିବେ ! ସୁନ୍ଦର ନିକଷ ସବୁଠାରୁ ସୁନ୍ଦର । ଏହା ଚିରନ୍ତନ, ଏହା ସତ୍ୟ । ତେଣୁ ଯେଉଁଠାରୁ ସୌନ୍ଦର୍ଯ୍ୟକୁ ଧର୍ମୀୟ ଅନୁଭୂତିକୁ ରହସ୍ୟବାଦ କୁହାଯାଏ, ସେ ହେତୁ ସେଇ ଦୃଷ୍ଟି କୋଣରୁ ଏଠାରେ ଆଲୋଚ୍ୟ ଦ୍ରଷ୍ଟା ପ୍ରଣୟିମାଙ୍କ ସମ୍ପର୍କକୁ ଆମେ ରହସ୍ୟବାଦ ବୋଲି କହିବା ।

ପକ୍ଷାନ୍ତରେ ସୌନ୍ଦର୍ଯ୍ୟ ହେଉଛି ଏକ ଅନାବିଳ ବସ୍ତୁ । ସୌନ୍ଦର୍ଯ୍ୟ ପ୍ରତି ସମସ୍ତେ ଆକୃଷ୍ଟ ହେବା ସ୍ୱାଭାବିକ । କିନ୍ତୁ ନାରୀପ୍ରତି ପୁରୁଷର ଆକର୍ଷଣ ମୂଳରେ ରହିଛି, ସୃଷ୍ଟିର ସୃଜନ ରହସ୍ୟ । ନାରୀ ଏବଂ ପୁରୁଷର ମିଳନ ଉପରେ ନିର୍ଭର କରେ ମାନବୀୟ ସଭ୍ୟତା, ସଭ୍ୟତାର ଉନ୍ମେଷ ଓ ଅଗ୍ର-ଗତି । ଏ ଯାନ୍ତ୍ରିକ ଯୁଗରେ ଆଜି ଆମେ ଯେଉଁ ଆଲୌକିକତାର ସନ୍ଧାନ ଲୌକିକତାର ମଧ୍ୟ ଦେଇ ଦେଖିବାକୁ ପାଉଁ, ତା'ର ଯଦି ପ୍ରକୃତ ଭିତ୍ତି ଆମେ ଅନୁସନ୍ଧାନ କରୁ, ତା'ହେଲେ ଦେଖି-ବାକୁ ପାଇବା ସେ ସବୁର ମୂଳ ଭିତ୍ତି ହେଉଛି ନାରୀ ଓ ପୁରୁଷର ମିଳନ । ନାରୀ ଓ ପୁରୁଷର ମିଳନ, କାୟା ଓ କାୟାର ମିଳନ ସାଧାରଣ ଚକ୍ଷୁରେ ଏକ ତୁଚ୍ଛ କଥା, ଏକ ନିତି ଦିନିଆ ଘଟଣା । କିନ୍ତୁ ପ୍ରକୃତରେ ଏହା ଅସାଧାରଣ, ପୃଥିବୀର ସବୁଠାରୁ ବଡ଼ କଥା । ଜୀବାତ୍ମା ପରମାତ୍ମା ସହିତ ମିଶିଯିବାକୁ ଯେପରି ସତତ ବ୍ୟାକୁଳ, ପରମାତ୍ମାରେ ଜୀବାତ୍ମା ଯେପରି ବିଲୀନ ହୋଇଯିବାକୁ ଚାହେଁ, ପରମାତ୍ମାରେ ଜୀବାତ୍ମା ଯେପରି ନିଜର ସ୍ୱତନ୍ତ୍ର ସତ୍ତା ଅନୁଭବ କରିପାରେ ନା, ସେହିପରି ସେହି ଦୃଷ୍ଟିକୋଣରୁ ପୁରୁଷ ସହିତ ନାରୀ ମିଶି ଯିବାକୁ କିପରି ଯେ ସତତ ବ୍ୟାକୁଳ ତାହା ସହଜରେ

ପ୍ରକାଶ କରିପାରି ପାରିବ ନାହିଁ । ଶରୀର ସହିତ ଶରୀରର ମିଳନ ଫଳରେ ନାରୀ ଓ ପୁରୁଷ ଉଭୟ କପରି ଯେ ଏକ ଶରୀର ହୋଇ-ଯିବାକୁ ଚାହାନ୍ତି, ସେ ସମୟରେ ସ୍ୱତନ୍ତ୍ର ସତ୍ତା ଅନୁଭବ କରିପାରନ୍ତି ନାହିଁ, ଏହା ସେ ପ୍ରକାର ଚରିତ୍ରିତ ମଧ୍ୟ ଦେଇ ଗତି କରି ନଥିବା ବ୍ୟକ୍ତି ଆଦୌ ବଝିପାରିବ ନାହିଁ । ଏହା ହେଉଛି ପୃଥିବୀର ସବୁ-ଠାରୁ ବଡ଼ କଥା, ସବୁଆଡ଼ୁ ଏହାର ପ୍ରାଧାନ୍ୟ ବେଶି ଏବଂ ମୋର ମନେ ହୁଏ — ରହସ୍ୟବାଦ ସମ୍ପର୍କରେ ଏହା ସବୁଠାରୁ ବଳ ବଡ଼ ଉଦାହରଣ ।

ସମସାମୟିକ ଦୃଷ୍ଟିରେ ରହସ୍ୟବାଦ ସ୍ଥୂଳତଃ ଏକଆ ହେଲେହେଁ ଉପସ୍ଥିତ ଆଲୋଚନାର ଭିତ୍ତି ଅନୁସାରେ ଆମେ କହିବୁ "ସାଂସାରିକ ଚିନ୍ତାଶୂନ୍ୟ ଅବଚେତନ ମନର ଆଧ୍ୟାତ୍ମିକ ଅନୁଭୂତିକୁ ରହସ୍ୟବାଦ କୁହାଯାଏ" । ମନୁଷ୍ୟ ଯେତେବେଳେ ଭବାବେଶରେ ସାଧାରଣ ଜୀବନର ଉର୍ଦ୍ଧ୍ୱସ୍ତରକୁ ଉଠି ସାଂସାରିକ ଚିନ୍ତାମାନ ବିସ୍ମୃତ ହୁଏ, ଏବଂ ଭଗବତ ଆରାଧନା ବା ଭାବନା ଦ୍ୱାରା ନିଜ ଅନ୍ତର ପରିପୂର୍ଣ୍ଣ କରେ ସେତେବେଳେ ଆମେ ତାର ଅବସ୍ଥାକୁ mystic situation ବୋଲି କହୁଁ ।

ବିଭିନ୍ନ ଆଲୋଚକଙ୍କ ଲେଖାରେ ରହସ୍ୟବାଦ ବିଭିନ୍ନ ରୂପ ଗ୍ରହଣ କରିଛି । ସେଥିରୁ ନିମ୍ନଲିଖିତ ତିନିପ୍ରକାର ରହସ୍ୟ-ବାଦକୁ ପ୍ରାଧାନ୍ୟ ଦିଆଯାଇ ପାରେ -

1. Invention ( Intuition ? ) 2. Meta-physics, 3 Poetic Belief. )

ପ୍ରଥମତଃ Invention ରହସ୍ୟବାଦ ସମର୍ଥକମାନେ ଯେ କୌଣସି ନୂତନ ଚିନ୍ତାଧାରାକୁ ବୁଝାଏ । ଯେଉଁମାନେ Mysticism କୁ Intuitive ବୋଲି ଭାବନ୍ତି ସେମାନେ ଯୁକ୍ତିଦ୍ୱାରା କଦାପି ରହସ୍ୟ-

ବାଦ କଣ ବୁଝାଇ ପାରିବେ ନାହିଁ । କିନ୍ତୁ ଯେଉଁମାନେ ନାନାପ୍ରକାର ମୁକ୍ତିଶାସ୍ତ୍ର ଅଧ୍ୟାପନାରେ ବିରତ ଏବଂ ଯେଉଁମାନେ ଯୁକ୍ତିଦ୍ୱାରା ଜୀବାତ୍ମା ଓ ପରମାତ୍ମାର ସମ୍ପର୍କ ରହସ୍ୟମୟ ବୋଲି ପ୍ରମାଣ କରିପାରିବେ ତାଙ୍କ ପାଖରେ ରହସ୍ୟବାଦ Metaphysics ର ରୂପ ନେବ । ସବୁଠାରୁ ସହଜ ଏବଂ ସୁଅର୍ଥ ଜ୍ଞାପକ ହେଉଛି Poetic Belief, ଯେଉଁଠାରେ ବ୍ୟକ୍ତିବିଶେଷର ଅନୁଭୂତି ଓ ବୋଧଶକ୍ତିର ସ୍ୱତନ୍ତ୍ରତା ଦ୍ୱାରା ନିୟନ୍ତ୍ରିତ ହୁଏ । ଗୋଟିଏ କୁସୁମିତ ଫୁଲ ଗଛକୁ ବା ପଦେ ଅନାବଶ୍ୟକ କଥାକୁ ଜଣେ ସାଧାରଣ ବ୍ୟକ୍ତି ଯେଉଁ ଦୃଷ୍ଟିକୋଣରୁ ଦେଖିବ, ଜଣେ ଭାବୁକ ଓ ଚିନ୍ତାଶୀଳ ଆସ୍ତିକ ବ୍ୟକ୍ତି ସେହି ଦୃଷ୍ଟିକୋଣରୁ ଦେଖିବ ନାହିଁ । ସାଧାରଣ ବ୍ୟକ୍ତିଟି ସବ ଫୁଲ ଗଛଟିକୁ ଖାଲି ଫୁଲଗଛ ବୋଲି ଭାବେ, ଭାବୁକ ବ୍ୟକ୍ତିଟି ସେଥିରେ ଖୋଜିବ ଦୃଷ୍ଟିର ରହସ୍ୟ । ଫୁଲଗଛଟିର ପ୍ରତି ପଦେ ପଦେ ସେ ଅନୁଭବ କରିବାକୁ ପାଇବ ଈଶ୍ୱର ସତ୍ତା ।

ଥରେ ଜଣେ ରଜକ ଘରକୁ ଜଣେ ସମ୍ଭ୍ରାନ୍ତ ବୃଦ୍ଧବ୍ୟକ୍ତି ସନ୍ଧ୍ୟାସମୟରେ ଲୁଗା ପାଇଁ ଯାଇଥିଲେ । ସେ ଠିକ୍ ତା ଘରେ ପହଞ୍ଚିଲା ବେଳକୁ ଶୁଣିଲେ ରଜକ ତାର କନ୍ୟାକୁ କହୁଛି 'ଧନଗଲା, ଆଲୁଅ ଜାଳିଁ ?' ବୃଦ୍ଧଙ୍କ ହୃଦୟରେ ଏହି ସ୍ନେହ କଥାଟି ଏପରି ଭାବନାର ଉଦ୍ରେକ କଲା ଯାହା ଫଳରେ ସେ ଲୁଗା ନ ନେଇ ଫେରିଗଲେ ଏବଂ ପରଦିନ ତାଙ୍କୁ ଡୋର କୌପୀନ ମାତ୍ର ବୁଲୁଥିବାର ଦେଖାଗଲା । ତେଣୁ ଅବସ୍ଥାର ସମ୍ମୁଖୀନ ହୃଦୟ ମନୁଷ୍ୟ ମନରେ ଯେଉଁ ଭାବବିହ୍ୱଳତା ଆସେ, ତାହା ରହସ୍ୟବାଦର ରୂପ ନିଏ ।

# ସବୁଜ ଯୁଗ

ସବୁଜ ଯୁଗର ଧାରବାହିକତା ସମ୍ପର୍କରେ ଏ ପର୍ଯ୍ୟନ୍ତ କୌଣସି ସନ୍ତୋଷଜନକ ଲିଖିତ ପ୍ରମାଣ ନ ଥିଲେ ମଧ୍ୟ ସବୁଜ ଯୁଗର ଉତ୍ପତ୍ତି, ଜୀବନ କାଳ, ଉଦ୍ଦେଶ୍ୟ, ବୈଶିଷ୍ଟ୍ୟ ଓ ଅବନତି କଥା ଅଧିକେ ସବୁ ସାହିତ୍ୟିକଙ୍କୁ ଜଣା । *୧୯୨୧ ମସିହାରୁ ୧୯୩୫ ମସିହା ପର୍ଯ୍ୟନ୍ତ ଦର୍ଘ ୧୫ ବର୍ଷ କାଳ ଓଡ଼ିଆ ସାହିତ୍ୟକୁ ଯେଉଁ ତରୁଣ ସାହିତ୍ୟିକମାନଙ୍କର ପ୍ରଭାବ ପ୍ରଭାବିତ କରି ରଖିଥିଲା, ମୁଖ୍ୟତଃ ସେଇମାନଙ୍କର ସାହିତ୍ୟକୁ ସବୁଜ ସାହିତ୍ୟ ଓ ଏଇ ଆଲୋଚ୍ୟ ସମୟକୁ ସବୁଜଯୁଗ ବୋଲି କୁହାଯାଏ । ଏ ଯୁଗର ସ୍ରଷ୍ଟା ହିସାବରେ ଅନ୍ନଦା ଶଙ୍କର ରାୟ, କାଳନ୍ଦୀଚରଣ ପାଣିଗ୍ରାହୀ, ଶରତ ମୁଖର୍ଜୀ, ବୈକୁଣ୍ଠନାଥ ପଟ୍ଟନାୟକ, ହରିହର ମହାପାତ୍ର ଓ ହରିଶ୍ଚନ୍ଦ୍ର ବଡ଼ାଳଙ୍କୁ ମନେ ରଖିବା ପ୍ରତ୍ୟେକ ସାହିତ୍ୟିକର କର୍ତ୍ତବ୍ୟ ।

ପ୍ରଥମ ମହାଯୁଦ୍ଧ ପୂର୍ବରୁ ଓ ପରେ ବଙ୍ଗର ସାହିତ୍ୟିକ ବାୟୁମଣ୍ଡଳକୁ ପ୍ରଭାବିତ କରି ରଖିଥିଲା ରବୀନ୍ଦ୍ରନାଥ, ମାଇକେଲ, ମଧୁସୂଦନ, ଡି. ଏଲ. ରାୟ ପ୍ରମୁଖଙ୍କ ସାହିତ୍ୟିକ ପ୍ରତିଭା । ସାହିତ୍ୟର ଚିରାଚରିତ ଅନୁସୃତ ପନ୍ଥାକୁ ବାଦ ଦେଇ ଏମାନେ ଏକ ସ୍ୱତନ୍ତ୍ର ସ୍ରୋତରେ ସାହିତ୍ୟକୁ ଚଳାଇବସିଲେ । ଏମାନଙ୍କ ସମଭିବ୍ୟାହାରରେ

* ୧୯୧୯ରେ ଆରମ୍ଭ ବୋଲି କାଳନ୍ଦୀ ପାଣିଗ୍ରାହୀ କହନ୍ତି [ଉତ୍କଳସାହିତ୍ୟ, ସେପ୍‌ଟେମ୍ବର, ୫୫]। ଅନ୍ନଦାଶଙ୍କର ରାୟ କହନ୍ତି ୧୯୨୧ [ସମାଜ ୨୦।୩।୫୭]

ପରବର୍ତ୍ତୀ ସମୟରେ କଲ୍ଲୋଳ ଯୁଗ ବୋଲି ଏକ ନୂତନ ଯୁଗର ସୃଷ୍ଟି ହେଲା । କଲ୍ଲୋଳପନ୍ଥୀମାନେ ସାହିତ୍ୟରେ ପ୍ରଚଳିତ ଧାରାକୁ ପରିହାର କରି ପ୍ରେମ, ପ୍ରେମିକା, ପ୍ରେମର ଦର୍ଶନ, ବିରହ, ଉତ୍କଣ୍ଠା, ମନୋଜ ପ୍ରେମ ଇତ୍ୟାଦି ଏବଂ ନିମ୍ନ ଓ ମଧ୍ୟବିତ୍ତ ଶ୍ରେଣୀର ଦୈନନ୍ଦିନ ବାସ୍ତବ ଜୀବନ ସମ୍ବନ୍ଧୀୟ ପୁଲକବାଦୀୟ ବିଷୟ ବସ୍ତୁକୁ ଭିତ୍ତି କରି ଲେଖାଲେଖି ଆରମ୍ଭ କଲେ । ସାହିତ୍ୟର ପାରମ୍ପରିକ ରଚନାରୀତିକୁ ପରିତ୍ୟାଗକରି ଏମାନେ ନୂତନ ଛନ୍ଦ ସମନ୍ୱିତ ଅଭିନବ ଭାବ ସମ୍ବଳିତ ଆଧୁନିକ କବିତାମାନ ରଚନା କଲେ । ସେ ସମୟର ଲୋକମାନଙ୍କର ମାନସିକ ଚିନ୍ତାଧାରାକୁ ଏ ଧରଣର ସାହିତ୍ୟ ଖୁବ୍ ଖାପ ଖାଇଲା ।

ଠିକ୍ ସେହିପରି ଓଡ଼ିଶାର ପ୍ରଚଳିତ ସାହିତ୍ୟ ଧାରାକୁ ବଦଳାଇବାରେ ମୁଖ୍ୟତଃ ଚେଷ୍ଟାକଲେ ଏହି ସବୁଜ ଯୁଗର ପ୍ରବର୍ତ୍ତକମାନେ । ବଙ୍ଗୀୟ କଲ୍ଲୋଳସାହିତ୍ୟ ଦ୍ୱାରା ଯେ ଏମାନେ ପ୍ରତ୍ୟେକ୍ ପ୍ରଭାବିତ ହୋଇଥିଲେ ଏହା ନିଃସନ୍ଦେହ । ପୂର୍ବ ପ୍ରଚଳିତ ଓଡ଼ିଆ ସାହିତ୍ୟର ଧାରାକୁ ବଦଳାଇବାରେ ସତ୍ୟବାଦୀ ଯୁଗର ଦାନ ମଧ୍ୟ କମ୍ ନୁହେଁ । ଏ ଯୁଗର ମୁଖ୍ୟତଃ ରାଧାନାଥ ଓ ମଧୁସୂଦନ ପ୍ରାଚୀନ ରୀତି ପରିହାର କରି ନୂତନ ଛନ୍ଦ, ରାଗ ଓ ରୀତିରେ ସାହିତ୍ୟର ପରିପ୍ରକାଶ ପାଇଁ ଚେଷ୍ଟାକଲେ ; କିନ୍ତୁ ଆଧୁନିକ ଚିନ୍ତାଧାରା ଅନୁଯାୟୀ ସାହିତ୍ୟର ଗତି ବଦଳାଇ ତାହାକୁ ଅନୁରୂପ ଭାବରେ ପରିବେଷଣ କରିବାରେ ସବୁଜପନ୍ଥୀମାନଙ୍କର କାର୍ଯ୍ୟକୃତି ପ୍ରକୃତ ଉଲ୍ଲେଖଯୋଗ୍ୟ ।

୧୯୨୧ରେ ଅନ୍ନଦା, କାଳନ୍ଦୀ, ବୈକୁଣ୍ଠନାଥ, ହରିହର ଓ ହରିଶ୍ଚନ୍ଦ୍ର ପ୍ରଭୃତି ରେଭେନ୍ସା କଲେଜର ୧ମ ବାର୍ଷିକ ଗ୍ରୁପ ; ସମସ୍ତେ ଉତ୍ସାହୀ, ସାହିତ୍ୟସେବୀ ଆଉ କମଠ । ସାହିତ୍ୟିକ

ଆଲୋଚନାପାଇଁ ସେମାନେ ସେମାନଙ୍କ ଭିତରେ ଗୋଟିଏ ସମିତି ଗଢ଼ିଲେ । ଏ ସମିତିକୁ କୁହାଯାଉଥିଲା Nonsense Club. ହରିଶ୍ଚନ୍ଦ୍ର ବଡ଼ାଳେ East Hostelରେ ଥାଆନ୍ତି । ତାଙ୍କର କୋଠରୀରେ ସମିତିର ସଭ୍ୟମାନଙ୍କର ଆଡ୍ଡା ହୁଏ । କ୍ରମେ ଏ ସମିତିରୁ ଗୋଟିଏ ହାତଲେଖା ପତ୍ରିକା ବାହାରିଲା । ସେଥିରେ ଯେ କୌଣସି ଭାଷାରେ ଯେ ଯାହା ଖୁସି ଲେଖୁଥିଲେ । * ଅନ୍ନଦା ଶଙ୍କର ଏଥିରେ ଓଡ଼ିଆ, ଇଂରାଜୀ ଓ ବଙ୍ଗଳା ଏଇ ତିନି ଭାଷାରେ ଲେଖୁଥିଲେ । ସମସାମୟିକ ଭାବରେ ତାଙ୍କର ଅନ୍ୟ ଲେଖା ସବୁ ପ୍ରବାସୀ ମାସିକ ପତ୍ରିକାରେ ମଧ୍ୟ ବାହାରୁଥିଲା । କିଏ ଜାଣିଥିଲା, ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସ ଭିତରେ କେତେଜଣ ଛାତ୍ରଙ୍କ ଦ୍ୱାରା ଗଢ଼ି ଉଠିଥିବା ଏଇ ନନ୍‌ସେନ୍‌ସ କ୍ଲବଟି ଦିନେ ଓଡ଼ିଶାର ସମସ୍ତ ସାହିତ୍ୟିକମାନଙ୍କର ସ୍ୱୀକୃତି ଲାଭ କରିବ, ଦିନେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ନେତୃତ୍ୱ ନେବ ! କିନ୍ତୁ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ଏଇ ଅବୋଧ ସମିତିର ସଭ୍ୟମାନେହିଁ ଅତି ଅପ୍ରତ୍ୟାଶିତ ଭାବରେ ନିଜର ଅଜାଣତରେ ଏକ ସ୍ୱତନ୍ତ୍ର ଯୁଗର ସୃଷ୍ଟି ସାଧନ କଲେ, ଏହାହିଁ ସବୁଜ ଯୁଗ ।

ପ୍ରାଚୀନ କାବ୍ୟରୀତିକୁ ଉପେକ୍ଷା କରି ଏଇ ତରୁଣମାନେ ଖୁବ୍ ଜୋର୍‌ସୋର୍‌ରେ ଲେଖାଲେଖି ଆରମ୍ଭ କଲେ । ମନର ପ୍ରେମ, ପ୍ରେମିକା, ପ୍ରେମିକ, ପ୍ରେମର ତତ୍ତ୍ୱ ଇତ୍ୟାଦି ଏବଂ ମଧ୍ୟବିତ୍ତ ଶ୍ରେଣୀର ବାସ୍ତବ ଜୀବନର ଚିତ୍ରଣକୁ ନେଇ ଏଇ ସବୁଜ ପନ୍ଥୀମାନେ କଳ୍ପନା ବିଳାସର ରଙ୍ଗିନ୍ ରୂପମଣ୍ଡଳରେ ବିଚରଣ କଲେ । ସେମାନଙ୍କ ମନର ଭାବଧାରା ସେମାନଙ୍କ ରଚିତ କ୍ଷୁଦ୍ର ଗଳ୍ପ ଓ କବିତାରେ ରୂପାୟିତ ହୋଇ ଉତ୍କଳ ସାହିତ୍ୟ, ବାରୁଣୀ, ମୁକୁର

* ସବୁଜ କଥା, ଝଙ୍କାର, ନଭେମ୍ବର ୫୫ ଦ୍ରଷ୍ଟବ୍ୟ

ପ୍ରକୃତ ସାହିତ୍ୟ-ପତ୍ରିକାମାନଙ୍କରେ ସ୍ଥାନଲାଭ କଲା ଓ ସେ ସମୟର ଜନସମାଜରେ ଏ ଧରଣର ଲେଖା କ୍ରମଶଃ ବହୁଳ ଭାବରେ ଆଦୃତ ହେବାକୁ ଲାଗିଲା । କାବ୍ୟଯୁଗର ରାଜକୁମାର ରାଜକୁମାରୀଙ୍କି ଛାଡ଼ ମଧ୍ୟବିତ୍ତ ଗୃହସ୍ଥ ଜୀବନକୁ ଏମାନଙ୍କ ଲେଖଣୀରେ ରୂପାୟିତ ହେବାକୁ ଲାଗିଲେ । କବିତାରେ ଛନ୍ଦର ପ୍ରବର୍ତ୍ତନରେ ଏମାନେ ପରିବର୍ତ୍ତନ ଆଣି ଛନ୍ଦକୁ ସ୍ୱାତନ୍ତ୍ର୍ୟ କରିବାକୁ ଲାଗିଲେ । ରବିବାବୁ ଆଶ୍ରା କରି ଏମାନଙ୍କ କବିତାରେ ଆଧୁନିକ ଛନ୍ଦ ସ୍ଥାନ ଲାଭ କଲା । ଇଂରେଜୀ ସାହିତ୍ୟରେ ସେଲି, ବ୍ରାଉନିଂ, ବାଇରନ୍, କିଟ୍ସ ଓ ୱାର୍ଡ୍ସୱାର୍ଥ ପ୍ରଭୃତିଙ୍କ ଦ୍ୱାରା ମଧ୍ୟ ଏମାନେ ପ୍ରଭାବିତ ହୋଇଥିଲେ । ଏମାନଙ୍କ ଲେଖାରେ ପୁଲକବାଦ [Romanticism] ଯଥେଷ୍ଟ ଦେଖାଦେଲା । ଏମାନେ ପ୍ରତ୍ୟେକେ ଜଣେ ଜଣେ ହେଲେ ପୁଲକବାଦୀ (Romantic).

ସାହିତ୍ୟରେ ଏ ପ୍ରକାର ନୂତନତ୍ୱ ସେତେବେଳକାର ଜନସମାଜକୁ ପ୍ରଲୁବ୍ଧ କରି ରଖିଲା । ବିଶ୍ୱନାଥ କର ଏହି ସବୁଜ-ଦଳର ସାହିତ୍ୟିକ ନବୀନତ୍ୱରେ ମୁଗ୍ଧ ହୋଇ ଏମାନଙ୍କ ଲେଖାକୁ ସ୍ୱସମ୍ପାଦିତ 'ଉତ୍କଳ ସାହିତ୍ୟ'ରେ ସ୍ଥାନ ଦେଇ ଏମାନଙ୍କୁ ସାହିତ୍ୟ-କ୍ଷେତ୍ରରେ ଅନୁରୂପ ଅଗ୍ରସର ହେବାପାଇଁ ଗଭୀର ପ୍ରେରଣା ଦେବାକୁ ଲାଗିଲେ । ଅନ୍ନଦା ଶଙ୍କର କହନ୍ତି "ଆମ୍ଭମାନଙ୍କର ସେହି ନନ୍ସେନ୍ସ କ୍ଲବଟି କର ମହାଶୟଙ୍କର ମାସିକ ପତ୍ରିକାରେ ସ୍ଥାୟୀ ଆସନ ପାଇ ସବୁଜଦଳ ନାମରେ ସୁପରିଚିତ ହୋଇଥିଲା" [ଝଙ୍କାର ନଭେମ୍ବର ୫୫] । ତା'ପରେ ହରିହର, କାଳନ୍ଦୀ, ଶରତ, ଅନ୍ନଦା ପ୍ରଭୃତି ମିଶି ସବୁଜ କବିତା ନାମରେ ଖଣ୍ଡିଏ ବହି ବାହାର କଲେ । ସବୁଜ ସାହିତ୍ୟ ସମିତିର ସଭ୍ୟ ନଥିବା କେତେକ ଲେଖକ ଲେଖିକା ପରେ ଏମାନଙ୍କ ସଙ୍ଗେ ଯୋଗଦେଇ

'ବାସନ୍ତୀ' ନାମରେ ଖଣ୍ଡିଏ ବୃହତ୍ ଉପନ୍ୟାସ ରଚନା କଲେ । ୧୯୩୦ ବେଳକୁ ଏହା ପ୍ରକାଶ ପାଇଲା । ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ଏ ପ୍ରକାର ରଚନାଗୁଡ଼ିକ ବଙ୍ଗଳା ସାହିତ୍ୟର କଲ୍ଲୋଳ ଯୁଗର ରଚନାଗୁଡ଼ିକର ଅନୁରୂପ ।

ପରେ ପ୍ରାୟ ୧୯୨୮ ବେଳକୁ ସବୁଜ ସମିତିର ମୁଖପତ୍ର ରୂପେ "ଯୁଗବୀଣା" ପତ୍ରିକା ପ୍ରକାଶ ଲାଭ କଲା । ଏହାର ସମ୍ପାଦନାରେ ମୁଖ୍ୟତଃ ହରିହର ରହିଲେ । ସବୁଜ ଦଳର ମତଗତ, କଥ୍ୟ ଓ ଲେଖାକୁ ସର୍ବସମକ୍ଷରେ ପରିବେଷଣ କରିବା ଏ ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ନୂତନ ଭାବ, କଳ୍ପନା ଓ ପ୍ରେରଣାର ସ୍ରୋତରେ ଆନ୍ଦୋଳିତ କରି ୧୯୩୩ ବେଳକୁ ଏହି ସବୁଜ ରଥୀମାନେ କ୍ରମଶଃ ନିସ୍ତବ୍ଧ ହୋଇ ଆସିଲେ । 'ଯୁଗବୀଣା' ପ୍ରକାଶନରେ ଅନିୟମିତତା ଘଟିଲା, ଆଗରୁ ମଧ୍ୟ ଘଟୁଥିଲା । କର୍ମ-ଶୈଥିଲ୍ୟର ପରିଚୟ ଦେଇ ସାମାନ୍ୟ କେତେଦିନ ପରେ ୧୯୩୫ରେ ସବୁଜଯୁଗ ଏକ ସମ୍ପୂର୍ଣ୍ଣ ମୃତଯୁଗରେ ପରିଣତ ହେଲା । ସବୁଜଯୁଗର ଅବନତି ସମ୍ପର୍କରେ ନାନାକାରଣକୁ ଉପଲକ୍ଷ୍ୟ ଦିଆଯାଇ ପାରେ । ଛାତ୍ର ଜୀବନର ଅବସାନ ପରେ ଜୀବନର ବାସ୍ତବ କ୍ଷେତ୍ରରେ ଓହ୍ଲାଇ ସବୁଜ ବନ୍ଧୁମାନେ କର୍ମର ତାଡ଼ନାରେ ପରସ୍ପରଠାରୁ ଦୂରେଇ ଯାଇଥିଲେ । ଚାକିରିଆ ବା ବୃତ୍ତି ଜୀବନର ଅନ୍ନ ସମ୍ମାନର ଚିନ୍ତା ଭିତରେ ସାହିତ୍ୟପ୍ରୀତି ସେମାନେ ଆଉ ଅନୁରୂପ ଉତ୍ସାହିତ ହୋଇ ପାରିଲେ ନାହିଁ । ପରସ୍ପର ପରସ୍ପରଠାରୁ ଦୂରରେ ଥିବାଯୋଗୁ ଆବଶ୍ୟକ ଆଲୋଚନାପାଇଁ ସମସ୍ତେ ଏକତ୍ରିତ ହୋଇ ପାରୁ ନ ଥିଲେ । ୧୯୩୪ରେ ବିଶ୍ୱନାଥ କରଙ୍କ ମୃତ୍ୟୁରେ ସବୁଜପନ୍ଥୀମାନେ ଏକ ପ୍ରଧାନ ଉତ୍ସାହଦାତା ଓ ସାହାଯ୍ୟକାରୀ ହରାଇବା କଥା

ମିଥ୍ୟା ନୁହେଁ । ଅଧିକାଂଶ ପତ୍ର ପତ୍ରିକାର ଅକାଳ ବିୟୋଗରେ ସବୁଜ ଚିନ୍ତାଧାରାକୁ ଜନସାଧାରଣରେ ଖେଳାଇବାରେ ଏ ପତ୍ରିକାମାନେ କ୍ରମଶଃ ଅକ୍ଷମ ହେଲେ ।

ସବୁଜଯୁଗର ଯୁଗପ୍ରବର୍ତ୍ତନ ପଥରେ ସବୁଠାରୁ ବଡ଼ ଅନ୍ତରାୟ ହେଲା ସମସାମୟିକ ଲୋକସମାଜର ମାନସିକ ଚିନ୍ତାଧାରାର ପରିବର୍ତ୍ତନ । ସବୁଜଯୁଗର କଳ୍ପନାପ୍ରେମ ପ୍ଲାବନରେ ଲୋକେ ଭାସି ଭାସି ଥକା ଲାଗିଲା । ସେମାନେ ନୂତନ ସାହିତ୍ୟର ଅନୁସନ୍ଧାନ କଲେ । ସବୁଜଯୁଗର ମୂଳୋତ୍ପାଟନ କରି ପୁରାତନ ଫକୀରମୋହନ ଯୁଗକୁ ଆଧୁନିକ ଢଙ୍ଗରେ ଯୋଡ଼ି ତରୁଣ ସାହିତ୍ୟିକମାନେ ସାହିତ୍ୟକୁ ଜୋରକରି ଫେରାଇ ନେଲେ । ସେମାନଙ୍କ ଭିତରେ ପ୍ରାଣବନ୍ଧୁ କର, ରାଜକିଶୋର ରାୟ, ଗୋପୀନାଥ ମହାନ୍ତି, ସଚ୍ଚି ରାଉତରାୟ, ନିତ୍ୟାନନ୍ଦ ମହାପାତ୍ର, ରବୀନ୍ଦ୍ର ନାଥ ଦାସ, ଗୋଦାବରୀଶ ମହାପାତ୍ର ପ୍ରଭୃତି ପ୍ରଧାନ । ସବୁଜ ଯୁଗର ସ୍ୱପ୍ନିଳ କଳ୍ପନାବିଳାସ ଓ ପ୍ରିୟା ଚରଣରୁ ତଥା ବ୍ୟସନିକ ପ୍ରେମକୁ ପଛରେ ପକାଇ ଏମାନେ ମନୁଷ୍ୟର ରୋଗ, ଦୁଃଖ, ନୈରାଶ୍ୟ ହାହାକାର ସମ୍ବଳିତ ଦୈନନ୍ଦିନ ରୁକ୍ଷ ଜୀବନକୁ ସାହିତ୍ୟରେ ରୂପ ଦେବାକୁ ଲାଗିଲେ । ଏ ଧରଣର ସାହିତ୍ୟ ଲୋକଙ୍କ ଭିତରେ ଖୁବ୍ ଶୀଘ୍ର ପ୍ରସାର ଲାଭକଲା । ଏ ଦଳର ଲେଖା ମୁଖ୍ୟତଃ ଗଳ୍ପ ଓ କବିତାରେ ରୂପାୟିତ ହୋଇ ନବଭାରତ, ଉତ୍କଳ ସାହିତ୍ୟ, ସହକାର ପ୍ରଭୃତିରେ ସ୍ଥାନ ଲାଭକରି ସବୁଜଯୁଗର ଶେଷ ଯବନିକା ଟାଣିବାକୁ ଅବଶେଷରେ ସମର୍ଥ ହେଲା । *

---

*ସବୁଜଯୁଗର ପୁଙ୍ଖାନୁପୁଙ୍ଖ ଆଲୋଚନା ଏ ସୀମିତ ସ୍ଥାନରେ ଅସମ୍ଭବ । ଏହା ସେ ଯୁଗର ଏକ ମୋଟାମୋଟି ଧାରଣା ମାତ୍ର । ଅଧିକ ଆଲୋଚନା ପାଇଁ ପାଠକେ 'ସବୁଜଯୁଗ ଓ ବୈକୁଣ୍ଠନାଥ' ଦେଖି ପାରନ୍ତି । —ଲେଖକ

# ବୈକୁଣ୍ଠନାଥ ଓ କାବ୍ୟ ସଞ୍ଚୟନ

ବୈକୁଣ୍ଠନାଥଙ୍କର କାବ୍ୟ ସଞ୍ଚୟନରେ ସଙ୍କଳିତ ହୋଇଥିବା ବହୁସଂଖ୍ୟକ କବିତା ମଧ୍ୟରୁ ଯେଉଁ କେତୋଟିକୁ ସ୍ଥାନ ଦିଆ ଯାଇଅଛି, ସେଗୁଡ଼ିକ ସବୁଜଯୁଗର ନାନା ଉଦ୍ଭବ (aspect) ର ପରିଚାୟକ । ବୈକୁଣ୍ଠନାଥଙ୍କୁ ରହସ୍ୟବାଦୀ କହି କୁହାଯିବ କି ନା ସେ ବିଷୟରେ ନାନାପ୍ରକାର ମତଭେଦ ଦେଖାଯାଏ । କାରଣ ତାଙ୍କର ଯାହା ସଙ୍ଗୀତ, ପାନ୍ଥଶାଳା, ପଥଭ୍ରଷ୍ଟା, ବାସରଭଙ୍ଗ ପ୍ରଭୃତି କେତୋଟି କବିତାକୁ ଛାଡ଼ିଦେଲେ ଅନ୍ୟଗୁଡ଼ିକରୁ ରହସ୍ୟବାଦର କୌଣସି ସୂଚନା ମିଳେ ନାହିଁ । ବରଂ କେତେକ କବିତାରେ ସେ ଭଗବାନଙ୍କ ଅସ୍ତିତ୍ୱ ଅସ୍ୱୀକାର କରିଚନ୍ତି ।

(ଉଦାହରଣ:— ଭଗବାନ ଅବା ସଇତାନ କେହୁ ନାହିଁ
ଯେତେ ଯା ଦେଖୁଛୁ ମଣିଷ କରଣୀ ଭାଇ ।
\+ \+ \+
ଜୀବନ୍ତ ତୋର ଭଗବାନ ଆଉଁ ଥାଉଁ
ମୂର୍ଖ, ପାଷାଣ ମନ୍ଦରେ କାହିଁ ଯାଉ ?
\+ \+ \+
ମଣିଷରେ ଏ ତ ବୁଦ୍ଧିର ଭାରସାଦ
ଭଗବାନ ! କିଏ ?......"

(ସ୍ୱପ୍ନରହସ୍ୟ—୭୫)

ନାସ୍ତିକ ବ୍ୟକ୍ତି କଦାପି ରହସ୍ୟବାଦୀ ହୋଇ ପାରେ ନା! ଏବଂ ଆସ୍ତିକ ବ୍ୟକ୍ତି କଦାପି ଈଶ୍ୱରଙ୍କ ଅସ୍ତିତ୍ୱରେ ସନ୍ଦେହ ରଖେ ନା। ତେଣୁ କହିବି ଯେ ବୈକୁଣ୍ଠନାଥଙ୍କୁ ରହସ୍ୟବାଦୀ କବି କୁହାଯିବ, ସନ୍ଦେହ ଉପୁଜେ। ଅଧ୍ୟାପକ ଗିରିଜାକିଶୋର ଦାସ୍ ତାଙ୍କ ସମ୍ବନ୍ଧରେ ଟିପ୍ପଣୀ ଦେବାକୁ ଯାଇ ଲେଖିଛନ୍ତି—

"ବୈକୁଣ୍ଠନାଥଙ୍କ କବିତାରେ ଶୂନ୍ୟବାଦ (Mysticism) ର ସ୍ପର୍ଶପାତ ହୋଇଛି ମାତ୍ର, କିନ୍ତୁ ତାହା ଠିକ୍ ଶୂନ୍ୟବାଦ ନୁହେଁ। ତଳକୁ ସମୟେ ସମୟେ ଖସି ଆସି ସେ ନରନାରୀର ପ୍ରାଣକୁ ଖେଳାଇବା ଚେଷ୍ଟା କରନ୍ତି ସତ, ମାତ୍ର ଅନଭିଜ୍ଞ ସ୍ୱର୍ଣ୍ଣକାର ଯେପରି ଖାଣ୍ଟିସୁନା ନେଇ ସୁନ୍ଦା ଗୁଡ଼ାଏ ପିଟିଥାଟି ତାକୁ ଶ୍ରୀହୀନ କରିଦିଏ, ବୈକୁଣ୍ଠନାଥ ସେହିପରି ... ।" (ପାଶ୍ଚାତ୍ୟ ଓ ସାହିତ୍ୟ ତତ୍ତ୍ୱ-୩୯)

ସେ ଯାହେଉ, ବ୍ୟକ୍ତିଗତ ଭାବରେ ବୈକୁଣ୍ଠନାଥ ରହସ୍ୟବାଦୀ ହୁଅନ୍ତୁ ବା ନ ହୁଅନ୍ତୁ, ତାଙ୍କର ମୂଳସଙ୍ଗୀତ ଗୁଡ଼ିକରେ ରହସ୍ୟ-ବାଦର ସ୍ପର୍ଶ ଅସ୍ୱୀକାର କରି ହେବ ନାହିଁ। Blake ପ୍ରମୁଖ ଇଂରେଜ କବି ଓ ରବୀନ୍ଦ୍ରନାଥଙ୍କ ଚିନ୍ତାଧାରାରେ ବୈକୁଣ୍ଠନାଥଙ୍କର କେତେକ ପଂକ୍ତି ରଚିତ ହୋଇଛି।

ବୈକୁଣ୍ଠନାଥଙ୍କର ରହସ୍ୟବାଦିତା ଆଲୋଚନା କରିବା ପୂର୍ବରୁ ରହସ୍ୟବାଦ ସମ୍ପର୍କରେ ସମ୍ୟକ୍ ଅର୍ଥବୋଧକ ଉକ୍ତିମାନ ଉପସ୍ଥାପିତ କରାଯାଇଛି ବୋଲି ମନେ ହୁଏ। ତଥାପି ବର୍ତ୍ତମାନ ଆଲୋଚନାର ଗୁରୁତ୍ୱ ଦୃଷ୍ଟିରୁ ଏତିକି କହିଲେ ଅପ୍ରାସଙ୍ଗିକ ହେବ ନାହିଁ ଯେ—ଦାର୍ଶନିକର ତାର୍କିକତା ରହସ୍ୟବାଦୀ କବିଠାରେ ଆଶା କରାଯାଏ ନା। ରହସ୍ୟବାଦୀ ଏଇ ସୃଷ୍ଟି ମଧ୍ୟରେ ସ୍ରଷ୍ଟାକୁ ଅନୁ-ସନ୍ଧାନ କରିବାକୁ ବ୍ୟାକୁଳ ହୋଇ ଉଠେ। ତେଣୁ ଉଭୟ ଦୃଷ୍ଟି କୋଣରୁ ରହସ୍ୟବାଦର ଦୁଇଟି ଦିଗ ନିର୍ଦ୍ଦେଶ କରାଯାଇପାରେ—

ଗୋଟିଏ ଧର୍ମ, ଅନ୍ୟଟି ଦର୍ଶନ ; ଗୋଟିଏ ଅନୁଭୂତି, ଅନ୍ୟଟି ଚିନ୍ତା ।

ରହସ୍ୟବାଦ ବା ରହସ୍ୟବାଦୀୟ ଚିନ୍ତା ଦୃଷ୍ଟିରୁ ଆମେ କବିଙ୍କର ଯାହା ସଙ୍ଗୀତ, ବାସର ଗୃହ, ପାନ୍ଥଶାଳା ଓ ପଥଭ୍ରଷ୍ଟା ପ୍ରଭୃତି କବିତାଗୁଡ଼ିକ ଦୃଷ୍ଟି ସମକ୍ଷକୁ ଆଣିବା । ଏହି କବିତା-ଗୁଡ଼ିକରେ ବୈକୁଣ୍ଠନାଥଙ୍କର ରୋମାଣ୍ଟିକ ଦୃଷ୍ଟିକୋଣ, ରହସ୍ୟ-ବାଦିତା ଏବଂ ଦାର୍ଶନିକତା ପ୍ରକାଶ ଲାଭ କରିଛି ।

ଚିନ୍ତାଶୀଳ ବ୍ୟକ୍ତିମାନେ ମାନବ ଜୀବନ ସମ୍ବନ୍ଧରେ ବହୁପ୍ରକାର ମତ ପୋଷଣ କରିଥାନ୍ତି । ପ୍ରାଚ୍ୟ ତଥା ପାଶ୍ଚାତ୍ୟ କବିମାନଙ୍କଦ୍ୱାରା ଜୀବନ ନାନାଭାବରେ ବିଶ୍ଳେଷିତ ହୋଇଛି । Long fellowଙ୍କ ଉକ୍ତି ଅନୁସାରେ ଜୀବନଟା କେବଳ ଏକ ଅସାର ସ୍ୱପ୍ନ । କବି ଭକ୍ତଚରଣଙ୍କ ମତ ଅନୁସାରେ ଜୀବନର ମୂଲ୍ୟ ଅତି ତୁଚ୍ଛ । ସେ ଲେଖିଥିଲେ—

"ଚର୍ମ ବେଢ଼ିଛି ସିନା ଚଉଦିଗକୁ ।
ଚିରି ଚୋ ଦିଅ ମାଳଗିରି ବାସୀଙ୍କି ॥

ମନୁଷ୍ୟ ଜୀବନକୁ ଏକ ଅପାର୍ଥିବ ସତ୍ତା ରୂପେ ପରି-କଳ୍ପନା କରି ସେହି ଦୃଷ୍ଟିରୁ ତାକୁ ଆଲୋଚନା କରିବା, ସାହିତ୍ୟ ସମୀକ୍ଷକଙ୍କ ମତରେ, ରହସ୍ୟବାଦର ଏକ ଅନ୍ୟତମ ଲକ୍ଷଣ । ସେହିପରି ବସ୍ତୁବାଦ ଜୀବନର ନିଃସାରତା ଉପଲବ୍ଧି କରି କବି ବୈକୁଣ୍ଠନାଥ ତାଙ୍କ କବିତାଗୁଡ଼ିକରେ ଆଶା ଓ ନୈରାଶ୍ୟର ଏକ ବିଚିତ୍ର ସମ୍ମିଶ୍ରଣ ସୃଷ୍ଟି କରି ଅଛନ୍ତି । ଐଶୀ ଶକ୍ତିର ମହତ୍ତ୍ୱ ବର୍ଣ୍ଣନରେ କବିଙ୍କର ସମୁଦାୟ କବିତାଗୁଡ଼ିକ

ସ୍ପଷ୍ଟର ହୋଇ ଉଠିଛି । କିନ୍ତୁ ତଥାପି ଅନେକ ସମୟରେ କବି ନିଜର ମତବାଦକୁ ବଜାୟ ରଖିପାରି ନାହାନ୍ତି । କେତେକ କବିତାରେ କବିଙ୍କର ଏକ ପାର୍ଶ୍ୱର ଅଭିବ୍ୟକ୍ତି, ଅପର ପାର୍ଶ୍ୱର ଅଭିବ୍ୟକ୍ତିର ବିରୁଦ୍ଧାତ୍ମକ ହୋଇ ଉଠିଛି । ଉଦାହରଣ ସ୍ୱରୂପ ସେ ଠାଏ କହିଛନ୍ତି—

“ଅଳପ ତୃଷା କ୍ଷୁଧା ଲଭି ତୁମରି ସୁଧା ତୃପତ ହେଲି ...

ସେହି କବିତାର ଅନ୍ୟତ୍ର ସେ କହିଛନ୍ତି—

ପଲ୍ଲବ ତରୁ ମୁଁ ଗୋ ପଳିତ ମୋ ପତର
ନିସ୍ୱଣା ପରଶରେ ଝରିବ ଅକାଳରେ ।” (ସାନ୍ଧ୍ୟ ସଙ୍ଗୀତ)

କବିଙ୍କ ଜୀବନର ଲକ୍ଷ୍ୟ ହେଉଛି ସେଇ ଅନନ୍ତ ସତ୍ତା, ସେଇ ପରମାତ୍ମା । ଏ ଭଙ୍ଗୁର ପୃଥିବୀକୁ କବି ପାନ୍ଥଶାଳା ରୂପେ ଚିତ୍ରିତ କରିଛନ୍ତି । କାବ୍ୟସଞ୍ଚୟନର ପ୍ରଥମ ପୃଷ୍ଠାରେ ସେ ଲେଖିଛନ୍ତି —

“ମାନସ ହଂସ ମୁଁ ମାନସେ ଯିବି ଉଡ଼ି”

ଏବଂ ପରବର୍ତ୍ତୀ କବିତାଗୁଡ଼ିକରେ ତାଙ୍କର ଲେଖନୀ ରଗିଣୀ ତୋଳିଛି—

“ଏ ପଥିକ ପାନ୍ଥଶାଳା ତୁମରି ଏ ବାସର ଭବନ
ଅଶେଷ ମାଧୁର୍ଯ୍ୟଭରା ଯେହ୍ନେ ସ୍ୱର୍ଗ ଜୀବନ୍ତ ସ୍ୱପନ
ଅଥବା ସାଗର ପାରେ ମୁଗ୍‌ଧ କବି ଚିତ୍ତ......।”

(ବାସର ସ୍ମୃତି)

“ମୁଁ ଚିର ପଥିକ ଏ ମରତେ ଦୂର ପରବାସୀ” (ପଥଯାତ୍ରା)

ଇତ୍ୟାଦି ସଂସାରର ମୋହ ମାୟା ଜଞ୍ଜାଳକୁ ରୂପ ଦେବାକୁ ଯାଇ ସେ ଲେଖିଛନ୍ତି—

"ନର ବାସନା ଜାଲେ ବନ୍ଦ ଯେ ଚିତ୍ତ
କେମିତ ପକ୍ଷୀରେ ମିଳେ କି ଅମୃତ ?
ଛାଡ଼ିବ ଦୂରେ ଯିବ, ଶାନ୍ତିବାରେ ଭାସିବ·····

+ + +

ମିଥ୍ୟା କପଟୀରେ ବଣିକ ମରଣ ଯେ
ନ ଚେତ ଚଳେ ଯାତ୍ରା କରି ମୋ ମଣି ସାଉ"

(ଯାତ୍ରା ସଙ୍ଗୀତ)

ପାର୍ଥିବ ଜୀବନ ଅପେକ୍ଷା ଆଧ୍ୟାତ୍ମିକ ଜୀବନକୁ କେତେ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି ଏବଂ ଜୀବନରେ ଆଲୋକର ସନ୍ଧାନ ଦେବାକୁ ଯାଇ ସେ ଲେଖିଛନ୍ତି---

"ସ୍ଥୂଳରେ ସ୍ଥୂଳ ମନ ନନ୍ଦ୍ୟ ମଧୁବନ
ଦେଖିବୁ ପ୍ରିୟ ସଖ, ଅଦୂରେ ଗୋଲକରେ;
ଅଦୂର ପଥେ ଆଜ ମିଳନ ତାର ସାଥେ
ବଜାଇ ରଥେ ତୋର ଜୀବନ ଆଲୋକରେ ॥"

(ଯାତ୍ରା ସଙ୍ଗୀତ)

"ଶୂନ୍ୟ ଜୀବନ ପୂଜନୁ ପ୍ରଭୀ କେ ଓ'ଟେ
ମଧୁର ସଜନୀ ଯେସନେ ଚଢିବାକେ
କରୁଣେ ଡାକଇ ଦୂରପଥ ଅବିରଳ
ସକଳ ତେଆଗୀ ଦୂର ପରବାସୀ ଚଳ ॥" (ବାସର ବୃନ୍ଦ)

"ଦୂରେ ସେଇ ପାନ୍ଥଶାଳା, ସହଯାତ୍ରୀ ଅଛ ତାକୁ ଦେଖି ?
ସକଳ ମାଧୁର୍ଯ୍ୟ ଖଣି ଶୋଭା ତା'ର ନୂତନ କାହିଁ ଲେଖି
ନନ୍ଦନ ସୁରଭି ସେବା ଉପବନ କୌମୁଦୀ ପ୍ଲାବିତ
ସ୍ପର୍ଶେ ପଡ଼େ ଜାହ୍ନି ଧରା ଶତଖାଲି କରେ ପୁଲକିତ

ଶ୍ରାନ୍ତ କ୍ଳାନ୍ତ ପାନ୍ଥ ଯେତେ ଭିକ୍ଷା କରେ ରଜନୀ ଆଶ୍ରୟ
ଧନ୍ୟ ହେଲେ, ହେଲେ ପୂତ, ଲଭି ସେ ଜନନୀ ବରାଭୟ
+ + +
ଏଣ୍ଡି ନ ପାରଇ ବନ୍ଧୁ, ଦୂରଶୂନ୍ୟ ପଥଯାତ୍ରା ନଶା
ସୁଦୂର ଆହ୍ୱାନେ ଜାଗେ ପ୍ରାଣେ ଅଦମ୍ୟ ଜିଗୀଷା ॥"
( ପାନ୍ଥଶାଳା )

ଏହି ସବୁ ଆଲୋଚନା ଦୃଷ୍ଟିରୁ ବୈକୁଣ୍ଠନାଥଙ୍କର ବ୍ୟକ୍ତି-ଗତ ମନୋବୃତ୍ତି ଉପରେ କୌଣସି ନିର୍ଭୁଲ ଟିପ୍ପଣୀ ଦେବା ଯଦ୍ୟପି ସମ୍ଭବପର ନୁହେଁ, ତଥାପି ଜୀବନ ସମ୍ପର୍କରେ ତାଙ୍କର ବହୁମୁଖୀ ଧାରଣା ତାଙ୍କ ଜୀବନରେ ଯେ ରହସ୍ୟବାଦର ସୃଷ୍ଟି ଉତ୍ପାତ କରିଛି, ଏହା କହିଲେ ଅପ୍ରାସଙ୍ଗିକ ହେବ ନାହିଁ—ଯେହେତୁ ସାଧାରଣ ଭାବରେ ସେ କାବ୍ୟସଞ୍ଚୟନରେ ରହସ୍ୟ-ବାଦୀସୁ ଅନୁଭୂତ ଫୁଟାଇବାରେ ସଫଳ ପ୍ରୟାସ କରିଚନ୍ତି । *

—o—

* ବାସ୍ତବବାଦ ଓ ଅବାସ୍ତବବାଦ ମଧ୍ୟରେ କବି ବୈକୁଣ୍ଠନାଥ ତାଙ୍କ କବି ଜୀବନର ଯାତ୍ରାପଥ ବାଛି ନେଇଛନ୍ତି । କାବ୍ୟସଞ୍ଚୟନର ତଥାକଥିତ ରହସ୍ୟବାଦ ସହିତ ସଂପୃକ୍ତ ଥିବା କବିତାଗୁଡ଼ିକୁ ନେଇ ବୈକୁଣ୍ଠନାଥଙ୍କର ଚିନ୍ତାଧାରା ଉପରେ ଆଲୋଚନା କରାଗଲା । ଏ ଚୋଷ କାବ୍ୟର ଅନ୍ୟ ଯେଉଁ କବିତାଗୁଡ଼ିକ ଜୀବନର ବାସ୍ତବତା ସହିତ ସଶ୍ଳିଷ୍ଟ ସେଗୁଡ଼ିକୁ ନେଇ କବି ବୈକୁଣ୍ଠନାଥଙ୍କ ଉପରେ ଅନୁସନ୍ଧିତ ଆଲୋଚନା ଜାରିରହିବ କରାଯିବ ।
—ଲେଖକ

# ଦଶଟି କବିତାର ବିଚାର

**ବିଲ୍ୱମଙ୍ଗଳ —**

<u>ସରଳାର୍ଥ</u>—ସଜନୀ ଚିନ୍ତାମଣି, ଜୀବନରେ ତୁମ ପ୍ରେମରସ ବୃଷ୍ଟି ମଧ୍ୟ ଆଜି ଆଉ Beauty ସବୁ ଦେଖିବାକୁ ଆଖି ଖୋଲି ଦଉଡ଼ୁଛି ଅର୍ଥାତ୍ ଅନ୍ୟ ଯେ କୌଣସି ସୁନ୍ଦରୀ ଯୁବତୀଟିଏ ଦେଖିଲେ ଆଖି ପଟ୍‌କନ ତା' ଦେହରେ ନାଚି ଯାଉଚି । ଏଇଟା ତୁମ ପ୍ରେମ ପ୍ରତି ଅପମାନ ନିଶ୍ଚୟ । ମୁଁ ତୁମର ସଚ୍ଚା ପ୍ରେମିକ ହୋଇ ଏ ଅପମାନ କେମିତି ସହ୍ୟ କରିବି ? ଆଖିକୁ ଫୁଟାଇ ଦେଲି । ତୁମେ ଦୁଃଖ କରିବ ନାହିଁ । ମୁଁ ନିଜେ ଅନୁତପ୍ତ ନୁହେଁ । କାରଣ ମୋ ପାପର ମୁଁ ପ୍ରାୟଶ୍ଚିତ୍ତ କରିଚି । ତୁମପରି ରୂପସୀକୁ ଅବହେଳା କରି ଅନ୍ୟର ରୂପପ୍ରତି ମୋ ନୟନ ପ୍ରଲୁବ୍‌ଧ ହୁଅନ୍ତା, ସ୍ୱା ମୁଁ କେମିତି ବରଦାସ୍ତ କରନ୍ତି ?

ଏ ପାର୍ଥିବ ସୌନ୍ଦର୍ଯ୍ୟ ପ୍ରତି ମୋ ମନ ଆଉ ନାହିଁ । ମୋ ଆଖିରେ ବର୍ତ୍ତମାନ ସେଇ ସ୍ୱର୍ଗୀୟ ରୂପ ଦେଖାଯାଉଛି । ତମାଳ ତଳେ ବଂଶୀଧାରୀ ଶ୍ରୀକୃଷ୍ଣ, ପାଖରେ ତୁମେ ସେବାଦାସୀ ; ଆହା ! କି ସୁନ୍ଦର ଦୃଶ୍ୟ ! ତମ ଅଧରର ମନ୍ଦ ମନ୍ଦ ହସ, ଚାହାଣିରେ ମାଳକଇଁର ଛଟା ମତେ ବିହ୍ୱଳ କରି ଦେଉଚି । ଜଣା ପଡ଼ୁଚି, ତୁମେ ସତେ ଯେପରି ସେ ନିତ୍ୟବୃନ୍ଦାବନର ପାଟରାଣୀ । ତୁମ ରୂପରାଜ୍ୟର ମୁଁ ଜଣେ ସାମାନ୍ୟ ଭିକାରୀ । ମତେ କଣ ପ୍ରେମଭିକ୍ଷା ଦେବନି ?

ମୂଳକଥା —ବିଲ୍ୱମଙ୍ଗଳ ଏକ ବ୍ରାହ୍ମଣ ଯୁବକ । ଗୋଟାଏ ବେଶ୍ୟାର ପ୍ରେମରେ ପଡ଼ି ସେ ଏପରି ମୋହାବିଷ୍ଟ ହୋଇଥିଲେ ଯେ, ସବୁବେଳେ ତା ପ୍ରେମଜଳରେ ଉବେଇ ଟୁବେଇ ହେବାକୁ ଜୀବନର ସାର୍ଥକତା ବୋଲି ଭାବୁଥିଲେ । ଦିନେ ଅନ୍ଧକାର ବୃଷ୍ଟିସଂକୁଳ ରାତିରେ ସେ ନିଜ ଘରେ ଶୋଇଥିବା ବେଳେ ଏପରି ବିରହ ଯନ୍ତ୍ରଣା ଅନୁଭବ କଲେ ଯେ ସେଇ ଅନ୍ଧାର କାଦୁଅରେ ଉଠିପଡ଼ି ଧାଇଁଲେ । ଏକ କାଳ ସର୍ପକୁ ରଜ୍ଜୁ ମନେକରି ତା ସାହାଯ୍ୟରେ ସେ ପ୍ରାଚୀର ଉଲ୍ଲଙ୍ଘନ କରି ବେଶ୍ୟା ସମ୍ମୁଖରେ ଉପନୀତ ହେଲେ । ଅର୍ଦ୍ଧଯାମ ଅତୀତ ପ୍ରାୟ । ବେଶ୍ୟା ତାଙ୍କର ଅଦ୍ଭୁତ ବେଶ ଓ ମାନସିକ ଅବସ୍ଥା ଦେଖି କହି ଉଠିଲା, "ହାୟ ହାୟ ! ମୋର ଏ ରକ୍ତମାଂସର ଦେହଟାରେ କଣ ଏମିତି ଆକର୍ଷଣୀ ଶକ୍ତି ନିହିତ ଅଛି ? ଯୌବନ କ୍ଷଣସ୍ଥାୟୀ । ମୃତ୍ୟୁପରେ ମୋର ଏଇ ମାଂସଳ ଯୌବନକୁ ନରକର କୀଟ କିଳ କିଳ କରି ଖାଇଯିବେ । ଏ ମେଦପୁଷ୍ଟ ଦେହଟା ପ୍ରତି ତୁମର ଏତେ ମୋହ ? ଏ ପ୍ରେମକୁ କାଣିଚାଏ ଯଦି ତୁମେ ଈଶ୍ୱରଙ୍କଠାରେ ଅର୍ପଣ କରି ପାରନ୍ତ, ଜୀବନଜଞ୍ଜାଳରୁ ମୁକ୍ତି ପାଇ ଯାଆନ୍ତ । ବିଲ୍ୱମଙ୍ଗଳଙ୍କର ଚେତନା ଆସିଲା । ସେ ସେଇଠୁ ଫେରିଲେ । ଘରକୁ ନୁହେଁ, ବୃନ୍ଦାବନ ଉଦ୍ଦେଶ୍ୟରେ । କିଛି ଦିନ ପରେ ତୃଷାର୍ତ୍ତ ହୋଇ ଗୋଟିଏ ପୁଷ୍କରିଣୀକୁ ଯାଇ ଦେଖିଲେ ଗୋଟିଏ ଯୁବତୀ ସଦ୍ୟ ପାଣି ଭିତରୁ ଉଠି ଆସୁଛି । ଓଦା ଲୁଗା ଦେହରେ ଜଡ଼ିଗଲେ ଯେମିତି ଦେଖାଯିବାର କଥା । ବିଲ୍ୱମଙ୍ଗଳ ପାଣି ପିଇବେ କଣ, ସେ ଯୁବତୀର ରୂପ ରସକୁ ପିଇଗଲେ । ଯୁବତୀଟି ତା ଘରକୁ ଗଲା । ଇଏ ଯାଇ ତା ପିଣ୍ଡାରେ ବସିଲେ । ଗୃହସ୍ୱାମୀ ବାହାରକୁ ଆସି ଜଣେ ବୈଷ୍ଣବଙ୍କୁ ଦେଖି ନମ୍ର ଭାବରେ ସେ କଣ ଖୁଜୁଛନ୍ତି ବୋଲି ପଚା-

ଗଲେ । ବିଲ୍ୱମଙ୍ଗଳ ହଠାତ୍ ନିଜର ଭ୍ରାନ୍ତି ବୁଝିପାରିଲେ । ସେ ଗୃହସ୍ୱାମୀଙ୍କୁ ଦୁଇଟି ଛୁଞ୍ଚ ମାଗି ସେଥିରେ ନିଜ ଦୁଇ ଆଖିକୁ ଫୁଟାଇ ଦେଲେ । ଆଖି ଥିଲାଠୁ ପିନା ମନ ବଦଳିଛ ହଉଛି, ଆଖି ଫୁଟିଲେ ?

ଟିପ୍ପଣୀ — ତଥାପି ଚିନ୍ତାମଣିର ବିମଳ ପ୍ରୀତିକୁ ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭୁଲିପାରି ନ ଥିଲେ ଏବଂ ସେଇ ପ୍ରେମନିଷ୍ଠା ଦ୍ୱାରିହିଁ ସେ ଈଶ୍ୱର ଲାଭ ଓ ମୋକ୍ଷଲାଭ କରିଥିଲେ । ଜୀବନର ଶେଷ ପର୍ଯ୍ୟାୟରେ ସେ କେତେକ ବୈଷ୍ଣବ ଗ୍ରନ୍ଥ ପ୍ରଣୟନ କରିଥିବାର ଜଣାଯାଏ । ପ୍ରେମତାତ୍ତ୍ୱିକମାନେ କହନ୍ତି, ଚିନ୍ତାମଣି ମଧ୍ୟ ବିଲ୍ୱମଙ୍ଗଳଙ୍କ ପତନ ପରେ ଗୃହତ୍ୟାଗ କରି ସନ୍ନ୍ୟାସିନୀ ସାଜିଥିଲେ ।

---

## ହରିଜନ—

ସାରାଂଶ —ଗାଁଟାରେ, ଅସ୍ପୃଶ୍ୟା ନିଃସ୍ୱା ଦାସୀଟିଏ, ସାଙ୍ଗରେ ବାଉଟା ଝୁଅ, ଭିକ୍ଷାବୃତ୍ତି ଅବଲମ୍ବନ କରି ମଧ୍ୟ ଉପବାସ, କିଛି ମିଳିନ । ବଇଶାଖ ମାସ, ରୌଦ୍ରର ଶୋଷରେ ହଂସା ଉଡ଼ି ଯାଉଛି । ରାଜପଥର ଏକ ପାର୍ଶ୍ୱସ୍ଥ ଏକ ବିରାଟ ସୌଧରେ ଜହ୍ନରବର ଚନ୍ଦ୍ର-ଦେଖି କିଛି ମିଳିବାର ଆଶା କରି ସେ ଡାକିଲା । ତତ୍‌କ୍ଷଣ ପରେ ଦାସୀଟାଏ ବାହାରି ଆସି ଉପହାସ କଲା ଭଳି କହିଲା, "ବାହାପର ଗୁଡ଼ବନ ହେଲା ସଇଲାଣି, ଆଜଯାଏ କୋଉଠି ଥିଲୁ । ଖିରିପୁରି ମିଠାଇ, ଜାକର ସବୁ ନଳ ଧରିଗଲା ବୋଲି ଆଜ ମୁଁ ଜଳଆ ଟିଣରେ ଫୋପାଡ଼ି ଦେଲି । ଯା ଯା, ମେହେନ୍ତରର ତ ଅବଯାଏ ଆସିନ, ପଡ଼ି ଥାଏ, ଆଣି ଖାଇବୁ ।

ଶେଷକରେ ପ୍ରାଣ ଯାଉଛି । ସ୍ଥାନ ଅସ୍ଥାନର ବାରଣ କାହିଁ ? କୁଆଟାଏ ଟିଣ ଭିତରକୁ ପଶିଯାଇ ଗୋଟାଏ ହାଣ୍ଡିରେ ସାଙ୍ଗଟି ଆଣିଲା । ତିନହେଁ ଗଛମୂଳେ ବସି ଖାଇଲେ । ପରଦିନ ପ୍ରଭାତରୁ ଦେଖିଲା ବେଳକୁ ମା ଝୁଅ ତିନଜଣଙ୍କର ପ୍ରାଣବାୟୁ ଉଡ଼ି ଯାଇଛି । ବାନ୍ତି, ଘୁଅ ମୂତରେ ତିନହେଁ ଜଡ଼ସଡ଼, ଗୁହଆଡ଼େ ମାଛି ଭଣଭଣ, ଅନୁମାନ କରାଯାଏ ଖାଦ୍ୟଗୁଡ଼ାକ ବିଷାକ୍ତ ହୋଇ ଯାଇଥିଲା ।

ଝଗଡ଼— United Pressଙ୍କର ଏକ ସମ୍ବାଦକୁ ଭିତ୍ତିକରି ଏ ଗଳ୍ପ-କବିତାର ଉତ୍ପତ୍ତି । ଘଟଣାସ୍ଥାନ ପାଟଣା । ୧୯୫୦ମସିହାରେ କବିତାଟି ଆରତି ପତ୍ରିକାରେ ପ୍ରକାଶିତ ହୋଇଥିଲା । ଗଳ୍ପାଂଶ ଥାଇ କବିତା ଲେଖିବା ଦିଗରେ ବୋଧହୁଏ ପ୍ରଥମେ ଆରମ୍ଭ କଲେ ଗୋଦାବରୀଶ ମିଶ୍ର । ଖୁବ୍ କମ୍ ସମୟ ଭିତରେ ତାଙ୍କ ପନ୍ଥା ବହୁ ସାହିତ୍ୟିକ ଅନୁସରଣ କରିଛନ୍ତି ।

ସେଇ ଏକ କଥା, ନଗ୍ନ ବାସ୍ତବତାର ଚିତ୍ରଣ । ଆଜିର ଝଡ଼ଝଞ୍ଜା ଜଞ୍ଜାଳମୟ ଜୀବନରେ ବଞ୍ଚି ରହିବା ବାସ୍ତବିକ ଏକ ସମସ୍ୟା । ବୁଭୁକ୍ଷା ମଣିଷକୁ ବିଷଖାଇବାକୁ ମଧ୍ୟ ପ୍ରବର୍ତ୍ତିକା ଦଏ । ଅଭାବର ଅନାଟନରେ ନ ପଡ଼ିଲେ ଦାରିଦ୍ର୍ୟ କଣ ବୁଝି ହୁଏନା । ଅବସ୍ଥାର ଚାପରେ ମଣିଷ ନିଜର ସନ୍ତାନ ସନ୍ତତିକୁ ମଧ୍ୟ ଏଡ଼ାଇ ନିଜ ବଞ୍ଚିବାର ବାଟ ଦେଖେ । ଏଇ ମର୍ମରୁ ଆରତି ପତ୍ରିକା କବିତାର ନାମ 'ବୁଭୁକ୍ଷା' ଦେବାକୁ ଇଚ୍ଛା କରିଥିଲେ, ମାତ୍ର ବୈକୁଣ୍ଠନାଥ କବିତାର ନାମ ରଖିଲେ ଅନ୍ୟ ଦୃଷ୍ଟିକୋଣରୁ । ନୀଚ ଜାତିକୁ ଆମେ ଆଜିର ଏ ପ୍ରଗତିଶୀଳ ଯୁଗରେ ବି ଅଛୁଆଁ କରି ରଖିଛୁ, ଘୃଣା କରୁଛୁ । ହରିଜନ ରମଣୀଟି ଅସ୍ପୃଶ୍ୟା ନ ହୋଇଥିଲେ

ହୁଏତ ତାର ଜୀବନ ନାଟିକା ଆଜୁ କରୁଣଦନ ଅଭିନୀତ ହୋଇ ପାରୁଥାନ୍ତା ।

ଏ ଦେଶରେ ଅଖାଦ୍ୟ ଖାଦ୍ୟରେ ଗଣିତ । ନିଃସ୍ୱା ରମଣୀଙ୍କୁ ଅଖାଦ୍ୟ-ଖାଇବାପାଇଁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ଦାରିଦ୍ର୍ୟ ଓ ଦାସୀ ଡ୍ରବର୍ତ୍ତାଇଛନ୍ତି । ତେଣୁ ଉଦର ପୂର୍ତ୍ତି କରି ଖାଇସାରିଲାପରେ ସେ ଯେତେବେଳେ 'ଜମିଦାର ବାବୁ ଜୀଇଁ ରହ' ବୋଲି ଆଶୀର୍ବାଦ କରନ୍ତି, କିନ୍ତୁ ଏ ତଥାକଥିତ ସୁସ୍ଥ ସମାଜର ସ୍ଥୂଳଦେହୀମାନଙ୍କୁ ଉପହାସ କରି କହନ୍ତି, ସେଇ ମଙ୍ଗଳ ଗାନ ଆଶୀର୍ବାଦରୁ ଦାସୀର ଭାଗ କେତେ ? ଅଖାଦ୍ୟ ଖାଇ ଶତ କାଙ୍ଗାଳ ଏ ଦେଶରେ କୁକୁରର ଜୀବନ ଯାପନ କରୁଛନ୍ତି. କିନ୍ତୁ ତଥାପି ରାମନାମର ପ୍ରହସନ ଏଠି କିଏ ଉଣା ଭାବୁଛି ? ମରଣର ଯନ୍ତ୍ରଣାରେ ଜୀବନର ଆତ୍ମନାଦ ଏଠି କରବର ଲାଗି ରହିଛି ଓ ରହିବ; ସେଥିପାଇଁ ମୃତମାନବର ଉଦ୍‌ବମନକୁ ମରଣୋନ୍ମୁଖ କୁକୁର ଯେତେବେଳେ ଚାଟୁଛି, ସେ ଗଙ୍ଗା ସ୍ନାନାର୍ଥୀ ଭକ୍ତର ରାମନାମ ଉଚ୍ଚାରଣକୁ ଉପହାସ କରି ଗର୍ଜି ଉଠୁଛି ; କିନ୍ତୁ ହାୟ, ତାର ଗର୍ଜନ ମୃତ୍ୟୁପଥ ଯାତ୍ରୀର ଶେଷ ଚିତ୍କାର ମାତ୍ର !

---

**ଉପମା ବିରୋଧ –**

ସାରାଂଶ—ପ୍ରିୟାର ନିଶ୍ୱାସକୁ ମଳୟ ପବନ ପରି ସ୍ନିଗ୍ଧ ବୋଲି ମୁଁ ଭାବିଥିଲି, କିନ୍ତୁ ବାସ୍ତବରେ ଦେଖିଲି ତାହା ସ୍ନିଗ୍ଧ ନୁହେଁ, ବୈଶାଖର ଝାଞ୍ଜିପରି ଗରମ । ପ୍ରିୟାର ଗୌରକାନ୍ତି ଚମ୍ପା ଫୁଲ ପରି ଓ ଓଷ୍ଠାଧରର ଶୋଭା ରଙ୍ଗଣୀ ଫୁଲ ପରି ବୋଲି ମୋର ଧାରଣା ଥିଲା । ମାତ୍ର ସେ ମନଲୋଭା କାନ୍ତି ରାତିର ପ୍ରଥମ ଯାମରେହିଁ ପାଣ୍ଡୁର ବର୍ଣ୍ଣ ଧାରଣ କଲା । ଆଷାଢ଼ର ପ୍ରଥମ ମେଘ

ପରେ ତା'ର କେଶଗୁଚ୍ଛ କୃଷ୍ଣ ଅଙ୍ଗ ଶୋଭାର ଦୀପ୍ତି ବିଦ୍ୟୁତ୍‌ର ଦୀପ୍ତି ପରି । କିନ୍ତୁ ହାୟ ! ଶ୍ୱଁଦ୍ର ମାତ୍ରକେ ମେଘର ଘନିମା ଗ୍ରାସିଗଲା ପରି ତାର ଦୀପ୍ତି କ୍ଷଣକେ ଅପସାରିତ ହେଲା । ଗୋଲାପର ସ୍ପର୍ଶରେ କଣ୍ଟକର ଭୟ ଥିଲା ପରି ପ୍ରିୟାର ଉନ୍ନତ ବକ୍ଷକୁ ଆଲିଙ୍ଗନ କଲାବେଳେ ସେଠି ମଧ୍ୟ ବାସ୍ତବ କ୍ଷେତ୍ରରେ ଯନ୍ତ୍ରଣାର ଭୟ ଅଛି । ତା'ର ସ୍ନିଗ୍ଧ ଚାହାଣି ଚକାନଶିଭଳି —ସନ୍ଧ୍ୟାରେ ତା'ର ପ୍ରଥମ ଅନୁରାଗରେ ମୁଁ ତୃପ୍ତ । କିନ୍ତୁ ଏ ସବୁର ପଛରେ··· ମୃତ୍ୟୁର ବିଭୀଷିକା, ବାସ୍ତବ ଯନ୍ତ୍ରଣାର ଅଟ୍ଟହାସ । ମଲ୍ଲିକା ଗୁଚ୍ଛରେ ପ୍ରିୟାର ଶୁଭ୍ର ହସର ଉପମା ନାହିଁ, ଅଛି ଯେପରି ମୃତ୍ୟୁର ଦନ୍ତ ବ୍ୟାଦାନତା, ତା' ହେଲେ କବି ଯେ ସବୁ ଉପମା, ରୂପକ ନେଇ କାବ୍ୟ ରଚନା କଲେ ଏ କାହା ନେଇ ? ଅବୋଧ ମାନବକୁ ଯାହା ଭ୍ରାନ୍ତିରେ ପକାଇଲେ ଖାଲି ! ଜୀବନର ଏ ରୁକ୍ଷ ବାସ୍ତବତା ଯେଉଁଠି ପ୍ରାଣ ବଞ୍ଚାଇବା କଠିନ, ସେଠି ଉପମାର ସ୍ଥାନ କାହିଁ ?

ଦିନେ ପ୍ରାତଃ ଭ୍ରମଣ ଶେଷ କରି ଫେରୁଥିବା ବେଳେ ଦେଖିଲି ଦୁବଘାସର ଫୁଲ ଉପରେ ଶ୍ରେଷ୍ଠ କାକର ବିନ୍ଦୁଟିଏ ପଡ଼ିଛି । ଭାବିଲି, ଉପମାର ସାର୍ଥକତା ଏଇଠି । ଏଇଠିକି ଜୀବନର ବାସ୍ତବତା ପ୍ରତିଫଳିତ । ମାନବର ଦୁଃଖ ଯନ୍ତ୍ରଣାରେ ସମବେଦନା ସୂଚାଇ ଶ୍ରେଷ୍ଠ ଫୁଲଟି କାନ୍ଦୁଛି କି ? ଏ ଉପମା ମୋ ପାଖରେ ନୂଆ, ଏ ଉପମା ମୁଁ ଆଜି କେଉଁଠି ପାଇ ନାହିଁ ।

ବିଚାର—କବି କଳ୍ପନା ବିଳାସ ସୃଷ୍ଟ ସାମାଜିକତାର ପରିପୂରକ । ନଗ୍ନ ବାସ୍ତବତା ଭିତରେ ମଣିଷ ଯେତେବେଳେ ତିଳେ ତିଳେ ପେଷି ହୋଇ ମରୁଛି ସେତେବେଳେ କଳ୍ପନା ବିଳାସର ସ୍ଥାନ କାହିଁ ? କବିର ପାରମ୍ପରିକ ଉପମାଗୁଡ଼ିକ ସବୁତ ନାସ୍ତିର

ନଗ୍ନ ଅଙ୍ଗର ତୁଳନା କରିବା ଅସ୍ୱାଭାବିକ ଓ ବାସ୍ତବତାର ପକ୍ଷ-ଶ୍ୱପ୍ନ ତାହାଙ୍କ କବି ଏଠାରେ ପ୍ରମାଣ କରିଛନ୍ତି ।

ପ୍ରକୃତି ସବୁବେଳେ ସୁନ୍ଦର, କିନ୍ତୁ ଯୌବନ କ୍ଷଣସ୍ଥାୟୀ । ତା ପରେ ବାସ୍ତବ କ୍ଷେତ୍ରରେ ଯେଉଁଟା ଯାହା ନୁହେଁ ତାକୁ ତା କହିବାରେ ବା ସାର୍ଥକତା କଣ ? ସ୍ତ୍ରୀର ହେଉ ପୁରୁଷର ହେଉ, ନିଶ୍ୱାସ ପବନଟା ଦେହକୁ ଉଷୁମ ଲାଗେ, ତାକୁ ମଳୟ ପବନର ସ୍ନିଗ୍ଧତା ସହିତ ତୁଳନା କରିବାର ତାତ୍ପର୍ଯ୍ୟ କଣ ? ଆଜିର ଏ ବାସ୍ତବତାର ରୁକ୍ଷ କ୍ଷେତ୍ରରେ ବଞ୍ଚିବାପାଇଁ ମଣିଷ ବାଟ ପାଏନା ; ଏପରି ସ୍ଥଳେ ନାରୀର ବିଭିନ୍ନ ଅଙ୍ଗ ବର୍ଣ୍ଣନାପାଇଁ ପ୍ରକୃତିର ନିତ୍ୟ ସୌନ୍ଦର୍ଯ୍ୟକୁ ଉପମେୟ କରି ନିରର୍ଥକ ଉପମାର ସୃଷ୍ଟି କରିବା କେବଳ ଉପହାସର ସାମଗ୍ରୀ ଛଡ଼ା ଆଉ କିଛି ନୁହେଁ । ମାନବର ନିତ୍ୟ ନିର୍ଯ୍ୟାତନା, ବ୍ୟଥିତ ହୃଦୟର ହାହାକାର ତଥା ଅଶ୍ରୁର ପ୍ରକୃତ ଚିତ୍ରଣହିଁ ଏ ନଗ୍ନ ବାସ୍ତବତା ସହିତ ତୁଳନା କରିବା ପାଇଁ ପ୍ରକୃତ ଉପମା ।

ପରୋକ୍ଷରେ ପ୍ରଚଳିତ ଉପମାକୁ କବି ଏ କବିତାର ବିରୋଧ କରିଛନ୍ତି, ତେଣୁ କବିତାର 'ଉପମା-ବିରୋଧ' ନାମକରଣ ସାର୍ଥକ ହୋଇଛି ।

—୦—

## ଉମା—

ସାରାଂଶ—ଉମା ଏକ ସୁନ୍ଦରୀ ରୂପବତୀ ଯୁବତୀ ଥିଲା । ଷୋଳବର୍ଷରେ ଏକ କିରାଣୀକୁ ସେ ବାହା ହେଲା । ବିବାହର ଚାରିଟି-ବର୍ଷ ମାତ୍ର ଅତୀତ ହୋଇଛି, ଯୌବନ ପାଖରୁ ବିଦାୟ ନେଇ । ସ୍ୱାମୀ ମଦ୍ୟପ, ଅତ୍ୟାଚାରୀ । ଘୁଙ୍କରଘରୁ ଫେରି ଏଠିସେଠି ବୁଲିବୁଲି

ମଦ୍ୟ ପିଇ ଅଧିରାତ୍ରେ ଘରକୁ ଫେରି ତାର ନମ୍ର ଅଙ୍ଗ ଉପରେ ଅତ୍ୟାଚାର କରେ । ତଥାପି ପୁଅ, ଦୁଃଖଦୈନ୍ୟର ନିର୍ଯ୍ୟାତନା ଭିତର ଦେଇ ସେ ସମସ୍ତଙ୍କୁ ଲାଳନପାଳନ କରିବାକୁ ବ୍ରତୀ । ଆଦର୍ଶ ଆଜି ତା ନିକଟରେ ତୁଚ୍ଛ । ସେ ଆଜି ରୂପର ପ୍ରତୀକ ନୁହେଁ, ଜୀର୍ଣ୍ଣ ଶୀର୍ଣ୍ଣ ଅଭାବ ଅନାଟନର ନିଷ୍ପେଷଣରେ ନିଷ୍ପେଷିତା ଏକ ସାଧାରଣ ନାରୀର ପ୍ରତୀକ ।

ବକ୍ତବ୍ୟ—କବି ବାସ୍ତବ ଜୀବନର ତିକ୍ତ ଅନୁଭୂତିକୁ ଏ କବିତାରେ ଫୁଟାଇବାକୁ ସଫଳ ଚେଷ୍ଟା କରିଛନ୍ତି । କାବ୍ୟ, କବିତା, କଳ୍ପନାବିଳାସ, ରୂପର ବୈଭବ ଏ ସବୁ ଜୀବନର ବାସ୍ତବ ସମସ୍ୟା ଆଗରେ ହାରିଯାଏ । ଉମା ରୂପବତୀ ଥିଲା, ଗୁଣବତୀ ଥିଲା । ତାର ଲୋଳ ଯୌବନର ମଦ୍ୟ ପାନ କରିବାକୁ ଶତ ତରୁଣ ଲାଳାୟିତ ଥିଲେ । କିନ୍ତୁ ଆଜି ? ତାକୁ ଏ ଅବସ୍ଥାକୁ ଆଣିଲା କିଏ ? ଜୀବନର ନିଷ୍ଠୁର ବାସ୍ତବତା । କିବା ଭାଗ୍ୟବାଦୀ । 'ମନୁଷ୍ୟ ଜୀବନରେ ପରିବର୍ତ୍ତନ ଭାଗ୍ୟର ଲିଖନ' ଏକଥା ସେ ଉମା ମୁହଁରେ ସ୍ୱୀକାର କରାଇ ଅଛନ୍ତି ।

---

## କିସା ଗୌତମୀ—

ସାରାଂଶ—ପୁତ୍ରହରା ଗୌତମୀ ବୁଦ୍ଧଙ୍କର ମହିମା ଶୁଣି ତାଙ୍କ ପାଖକୁ ପୁତ୍ରର ଜୀବନ ଭିକ୍ଷା କରିବାକୁ ଆସିଥିଲେ । ଜନ୍ମ ହେଲେ ମରଣ ଅନିବାର୍ଯ୍ୟ ଏ କଥା ବୁଦ୍ଧ କିପରି ତାକୁ ବୁଝା-ଇବେ ? ସେ ତାକୁ ଏପରି ଏକ ପରିବାରରୁ ସୋରିଷ ଆଣିବାକୁ କହିଲେ, ଯେଉଁ ପରିବାରରେ କେହି କେବେ ମରି ନ ଥିବେ । ଗୌତମୀ ବୁଲି ବୁଲି ଆନ୍ତ ହେଲା ପରେ ନିଜ ଭ୍ରମ ବୁଝିପାରି

ଥିଲେ । ଜୀବନ ଅସ୍ଥାୟୀ, କ୍ଷଣଭଙ୍ଗୁର । ଜୀବନର ମୁକ୍ତି ପାଇଁ ସେ ବୁଦ୍ଧଙ୍କ ନିକଟରେ ପ୍ରାର୍ଥନା କଲେ । ବୁଦ୍ଧ ତାଙ୍କୁ ନିଜ ସମ୍ପ୍ରଦାୟଭୁକ୍ତ କଲେ ।

ବଗୁର—କବିତାଟି ବାସ୍ତବ ଦର୍ଶନ ତତ୍ତ୍ୱ ଉଜ୍ଜ୍ୱଳ । ଜୀବନରେ ରୋଗ, ଦୁଃଖ, ମୃତ୍ୟୁ ବାନ୍ଧିକା ଲାଗିଛି । ମନୁଷ୍ୟ ଏ ସବୁ ନିର୍ଯ୍ୟାତନା ମଧ୍ୟ ଦେଇ ଅବଶ୍ୟ ଗତି କରିବ । ଯାହାକୁ ଛାଡ଼ି ତାର ନିସ୍ତାର ନାହିଁ । ପୁତ୍ରହରା ଜନନୀ ଔଷଧ ପାଇଁ ଦ୍ୱାର ଦ୍ୱାର ବୁଲାଇ ବୁଲିଲାବେଳେ ଦୁନିଆର ବାସ୍ତବ ଜୀବନର କରୁଣ ପରିଣତିର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଛନ୍ତି ଏବଂ ନିଜର ଭ୍ରମ ବୁଝିପାରି ବ୍ୟଥିତ ପ୍ରାଣରେ ଗାଇ ଉଠିଛନ୍ତି —

ସହି ହେବ ଶତ ସନ୍ତାନ ଶୋକ ଲଭିଛି ଲଭିବ ପ୍ରାଣ
ସକଳ ଶୋକରୁ ବଳି ଅସହ୍ୟ ଆତ୍ମାର ଅପମାନ
ଲୋଡ଼ା ନାହିଁ ହୃତ ସନ୍ତାନ ପ୍ରଭୁ, ମୋ ଭଳି ଛନ୍ତି ଶତ
ଆତ୍ମାପମାନ ଅଜ୍ଞାନ ତମୁ କଢ଼ାଇ ନିଅ ହେ ପଥ ॥

ବୁଦ୍ଧ ତାଙ୍କୁ ସେଇଠି ବୁଝାଇଛନ୍ତି ଯେ ସେ ମଧ୍ୟ ଜଣେ ମନୁଷ୍ୟ ମାତ୍ର । ସୃଷ୍ଟିର ଅବଶ୍ୟମ୍ଭାବୀ ପରିଣତିକୁ ସେ ବଦଳାଇ ପାରିବେ ନାହିଁ । ତଥାପି ଜୀବନରେ ଆଲୋକର ସନ୍ଧାନ ପାଇବାକୁ ହେଲେ ବୌଦ୍ଧ ସଙ୍ଘଭୁକ୍ତ ହେବା ହିଁ ଏକମାତ୍ର ପନ୍ଥା ।

ବୈକୁଣ୍ଠନାଥ ବୌଦ୍ଧ ଦର୍ଶନତତ୍ତ୍ୱ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିବା ଏଥିରୁ ଅନୁମିତ ହୁଏ ।



ବଂଶୀବିଶ –

ସରଳାର୍ଥ—ହେ ରୂପସୀ, ତମ ରୂପରେ କ ଆକର୍ଷଣ ଅଛି ଯାହା ମୁଁ ଭୁଲି ପାରୁନ, ତୁମର ସେ ରୂପ ମାଧୁରୀ ମୋ ହୃଦୟରେ ଏକ ଅମଳ ଆନନ୍ଦର ଉଦ୍ରେକ କରୁଚ । ସେ ଧନ୍ୟ ଯେ ଯୁବତୀର ଯୌବନକୁ ଉପଭୋଗ କରେ, ରୂପସୀର ରୂପ ମଦରୁ ଆକଣ୍ଠ ପାନ କରିଛି । ଯୁବତୀର ନୟନବାଣରେ ଯେ ଶିକାର ହୋଇଚ ସେ ଧନ୍ୟ; ପ୍ରେମ ଅଭିଯାନରେ ଯେ ସଫଳ ହୋଇଚ, ପ୍ରେମିକାର ରାଗ, ରୋଷ, ଅଭିମାନ ସହି ଯେତ କ୍ଷତ ହୋଇଛି ସେ ବ ଧନ୍ୟ । ମୋର ହୃଦୟାକାଶରେ ଥରେ ତୁମର ରୂପଜ୍ୟୋତ୍ସ୍ନା ପଡ଼ିଲେ ଜ୍ୟୋସ୍ନାର ମଧୁରିମାରେ ହୃଦୟ ପ୍ଳାବତ ହେଲାପର ପ୍ରଭାତର ଅରୁଣାଲୋକରେ ହୃଦୟ ଉଦ୍‌ଭାସିତ ହେଲା ପରି ଜଣାଯାଏ । ସେତେବେଳେ ମୁଁ ନଜର ସ୍ବତନ୍ତ୍ର ସତ୍ତା ଅନୁଭବ କରି ପାରେନା ।

ମୁଁ ହୀନ, ମୁଁ ଦରିଦ୍ର । କ ରୂପର ପ୍ରହେଳିକାରେ ମତେ ବାନ୍ଧିଲ ! ପରମ ସମ୍ପଦ ସଦୃଶ ତୁମର ସେ ରୂପସମ୍ଭାରକୁ ମୁଁ କେଉଁଠି ସାଇତବ ? ମନେହୁଏ ତୁମର ସେ ରୂପର ଗୌରବକୁ ମୁଁ କବତା ଓ ଗୀତରେ ରୂପାୟିତ କରିବ; କିନ୍ତୁ ହାୟ ! କବ ଆଉ ଶିଳ୍ପୀର ଅନ୍ତର ବୁଝିବାକୁ କେତେଜଣ ଏ ବାସ୍ତବ କ୍ଷେତ୍ରରେ ଅଛନ୍ତି ? ତୁମର ରୂପର ବୈଭବ ପାଖରେ ମୋ ମୁଖରେ ଭାଷା ଫୁଟେନା । ତୁମର ସେ ସ୍ନିଗ୍ଧ ଚିତ୍ତବିନୋଦନୀ ଚାହାଣି ମରଣକୁ ବ ସାର୍ଥକ କରେ ; ଅର୍ଥାତ୍ ତୁମର ଚାହାଣି ପାଇବାପାଇଁ ଯଦ କାହାକୁ ମରିବାକୁ ପଡ଼େ ତଥାପି ତାର ଅନୁଶୋଚନା ନାହିଁ । କାରଣ ତୁମର ଅମୂଲ୍ୟ ଚାହାଣି ଆଗରେ ମରଣ ତୁଚ୍ଛ ।

ପ୍ରେମିକାର 'ମୁଁ ତୁମକୁ ଭଲପାଏ' ଏଇ ପଦେ କଥା ଆଗରେ ବିଶ୍ବର ସମସ୍ତ ସମ୍ପତ୍ତି ତୁଚ୍ଛ । ପ୍ରେମିକାର ପଦେ ପ୍ରେମ-

ମଧୁ ବାଣୀ ପ୍ରେମିକ ମନରେ ଯେଉଁ ମାଦକତା ଆଣେ, ଯେଉଁ ଚଞ୍ଚଳଭାବ ସୃଷ୍ଟି କରେ, ତାହା ତୁଳା ପ୍ରମାଣେ ବିଶ୍ୱର ସମସ୍ତ କଳା ବୈଭବ ଅର୍ଜ୍ଜନ କରିବାକୁ ସମର୍ଥ ହେବନାହିଁ । ଜଗତରେ ହସିବେ, କାନ୍ଦିବେ ରୂପସୀର ରୂପ ହଳାହଳ ବିଷ ପରି । କ୍ଷଣଜୀବୀ ମତ୍ସ୍ୟ ବଡ଼ଶୀ କବଳରେ ପଡ଼ି ନିସ୍ତାର ନ ପାଇ ଛଟପଟ ହେଲାପରି ମାନବ ରୂପସୀର ପ୍ରୀତିରେ ପଡ଼ି ରୂପହଳାହଳ ପାନ କରି ଛଟପଟ ହୁଏ—ଏଥିରେ ସାର କେବଳ ଭୂଣ୍ଡିବାଇଦ, ଅପବାଦ କଳଙ୍କ । ହେ ରୂପସଣୀ, ତୁମେ ମୋ'ଠାରୁ ଦୂରରେ ଅଛ, ସେଇ ଦୂରରେ ଥାଅ । ମୁଁ ନିଃସ୍ୱ, ତୁମ ରୂପର ପୂଜା କରୁଛି, ତୁମ ରୂପର ସ୍ମୃତି ମୋ ଜୀବନର ନିତ୍ୟ-ସମ୍ବଳ ହେଉ । ଜୀବନରେ ମୋର ଯାହା ସ୍ପୃହା ଥିଲା, ତାହା ମୃତ୍ୟୁରେ ପୂର୍ଣ୍ଣତାପ୍ରାପ୍ତ ହେବ । ଜୀବିତରେ ମୁଁ ତୁମକୁ ପାଇ ପାରିଲି ନାହିଁ, କିନ୍ତୁ ମୃତ୍ୟୁ ପରେ ପୁଣି ତୁମର ମୋର ମିଳନ ହେବ । ତେଣୁ ତୁମ ମୋ ଭିତରେ ଏ ଯେଉଁ ପାର୍ଥିବ ବ୍ୟବଧାନ, ତା ମତେ ପୀଡ଼ା ଦେଇ ପାରୁନି । ଏ ସୃଷ୍ଟି ପ୍ରଚ୍ଛନ୍ନ, ରହସ୍ୟମୟ । ମାତ୍ର ତୁମର ସେ ରୂପଶିଖା ଆତ୍ମାକୁ ପ୍ରକୃତ ସତ୍ୟର ମାର୍ଗ ଦେଖାଇ ଶତ ପ୍ରହେଳିକା, ଜଞ୍ଜାଳ ସରଳ ବା ସମାଧାନ କରେ । ତୁମର ସେ ସୀମିତ ରୂପ ଦେହରେ କି ଅସୀମ ଶକ୍ତି ନିହିତ ଅଛି ?

ହେ ରୂପସୀ, ତୁମର ରୂପ ଅଭିମାନ କେବେ ଯଦି ମୋ ପ୍ରତି ତୁମର ଅବଜ୍ଞା ଭାବକୁ ବଢ଼ାଏ, ତାହେଲେ ଅନ୍ତତଃ ଏତିକି ଭୁଲିବ ନାହିଁ ଯେ ଏ ଦରିଦ୍ର କବି ତୁମର ସେ ରୂପର ମହତ୍ତ୍ୱକୁ କବିତାରେ ସଞ୍ଜୀବିତ କରିଯାଇଛି । ଭୁଲିବ ନାହିଁ, ରୂପର ଅଭିସାର ସୃଷ୍ଟିର ମଙ୍ଗଳ ଲାଗି, ବ୍ୟକ୍ତିତ୍ୱର ଲାଗି ନୁହେଁ ।

ବିଚାର—ଇଟାଲୀୟ କବି ଦାନ୍ତେ ବିଏଟ୍ରିସ ନାମ୍ନୀ ଏକ ଯୁବତୀକୁ ଭଲ ପାଉଥିଲେ ; କିନ୍ତୁ ଯୁବତୀଟି ଅନ୍ୟର ପତ୍ନୀ

ସ୍ୱୀକାର କରି କିଛୁଦିନ ପରେ ମରିଗଲେ । ତାଙ୍କର ବିଯୋଗରେ ଦାନ୍ତେ ଲେଖିଲେ ଡିଭାଇନ୍ କମେଡ଼ି ।

* ନକଲି ରହସ୍ୟବାଦୀ (Psuedo Mystic) ବୈକୁଣ୍ଠନାଥ ଏ କବିତାରେ ପୁଲକବାଦୀ (Romantic) ସାଜିଛନ୍ତି । ଦାନ୍ତେଙ୍କର ଚିନ୍ତାଧାରାରେ ସେ ପ୍ରେମର ଅମରତ୍ୱ ବର୍ଣ୍ଣନା କରିବାରେ ସଫଳ କାମ ହୋଇଛନ୍ତି । ଏ କବିତାରେ କବି ଜୀବନର ସେ ଯେଉଁ କଠୋର ନିଷ୍ଠୁର ସତ୍ୟ "କେ ବୁଝିଇ କବି ଶିଳ୍ପୀ ଅନ୍ତର ଗୀନତା" ଫୁଟାଇଛନ୍ତି ତାହା ପ୍ରକୃତରେ ଭାବିବାର କଥା । ବାସ୍ତବରେ କବିର କାବ୍ୟର ମୂଲ୍ୟ କେହି ଦେଇପାରେ ନା । ଏ କଥା ଆଲୋଚନା କଲାବେଳେ ନୀଳକଣ୍ଠ ଦାସଙ୍କର କୋଣାର୍କେ କାବ୍ୟର "ଗ୍ରାହକତା ଏକା କବିକୁ ତାର ପ୍ରକୃତ କାବ୍ୟମୂଲ୍ୟ ଦେଇଥାଏ" ସାର କବିତ ପଂକ୍ତି ମନେ ପଡ଼େ । ବାସ୍ତବିକ୍ ବୈକୁଣ୍ଠନାଥ, ସତ୍ୟ ପ୍ରକାଶ କରିବାରେ ତୁମର ଲେଖନୀ ସାର୍ଥକ ହୋଇଛି ।

ଏ ଆଧୁନିକ ପ୍ରେମ କବିତା ଲେଖିବାରେ ତାଙ୍କ ଉପରେ ତାଙ୍କର ସମସାମୟିକ ଅନ୍ୟ Romantic କବିମାନଙ୍କର ପ୍ରଭାବ ପଡ଼ିଛି, ବିଶେଷତଃ ମାୟାଧର ମାନସିଂହଙ୍କର † । 'ବିଦାୟିକ' କବିତାର "ହେ ଅରୂପ ସ୍ୱପ୍ନବାଳ ଯିବି ଯାଅ ଚଳି..." ଅଂଶ ଉପରେ ମାୟାଧର ମାନସିଂଙ୍କର 'ଧୂପ' ର "ପ୍ରିୟାପଥପ୍ରାନ୍ତ ଦୂରାନ୍ତରେ ଯାଅ ଯେ ପଥେ ଯାଏ ସେ ଚଳି"...ଇତ୍ୟାଦି ଅଂଶର ପ୍ରଭାବ ସ୍ପଷ୍ଟ ।

ସାବଲୀଳତା ଓ ଛନ୍ଦବଦ୍ଧତା ଦୃଷ୍ଟିରୁ କବିତାଟି ମନୋରମ ପ୍ରେମାନୁରାଗୀର ପ୍ରେମତତ୍ତ୍ୱ ତଥା ପ୍ରେମର ଚିରନ୍ତନୀ ବର୍ଣ୍ଣନାରେ ଏ କବିତା ପରିପୂର୍ଣ୍ଣ । ଜାଗତିକ ସମ୍ପଦ ସମ୍ଭାର ଆଗରେ କାଣିଚ୍ଛ ଏ

---

* ପଣ୍ଡିତର ଦେଖନ୍ତୁ । — ଲେଖକ † ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର କହନ୍ତି ।

ପ୍ରେମର ମୂଲ୍ୟ ବା ମହତ୍ତ୍ୱ ଯେ କେତେ ବେଶି ତାହା ସ୍ୱୟଂ କବି ଜାଣି କହି ଯଥାର୍ଥ ଗାଇଛନ୍ତି "ଶୀତଳ ସୁରଭି ଚଂଚଳର ମାଦକତା, ଅପଲକ ଚକ୍ଷୁକଳା ତୁଳା ସାର୍ଥକତା" । ପ୍ରେମିକ ନ ହେଲେ ଏ ତତ୍ତ୍ୱର ସତ୍ୟତା ଉପଲବ୍ଧି କରିବା କଠିନ ।

———

## ପାନ୍ଥଶାଳା—

ସରଳାର୍ଥ—ଆତ୍ମା ପରମାତ୍ମାର ଏକ ଅଂଶ । ସେହି ଅଂଶ ଗ୍ରହଣ କରି ମନୁଷ୍ୟ ଏ ପୃଥିବୀରେ ପ୍ରବାସୀ ତୁଲ୍ୟ । ମନୁଷ୍ୟ ଜୀବନ ଲକ୍ଷ ଲକ୍ଷ ଅନୁଭୂତି ଓ ସ୍ମୃତିର ସମଷ୍ଟି ଏବଂ ସେହି ସବୁ ଦ୍ୱାରହିଁ ଏ ଜୀବନ ସୃଷ୍ଟି । ମୋର ମନେନାହିଁ ମୁଁ ଜୀବନର ପ୍ରାକ୍‌କାଳରେ କେତେ କଣ କରିଛି । ଜନନୀର ସ୍ନେହ, ଶୈଶବର ସାଥୀ, ଯୌବନର ଯୁବତୀ—ଆଜି ସବୁ ମୋର ମନେ ପଡ଼େ । ସେହିସବୁ ସ୍ମୃତିର ସମଷ୍ଟିହିଁ ମୋର ଆତ୍ମସତ୍ତା । ସ୍ମୃତି ହୁଏତ ସ୍ମରଣରେ ନରହି ପାରେ, କିନ୍ତୁ ସ୍ମୃତିର ପ୍ରଭାବ ମୋଠାରେ ଆତ୍ମପ୍ରକାଶ କରୁଛି । ଜୀବନର ଯାତ୍ରାପଥ ଅତି ଦୀର୍ଘ ଏବଂ ଏ ପଥରେ ଭ୍ରମ ପ୍ରମାଦ ରହିବା ସ୍ୱାଭାବିକ । ଏ ଜୀବନ ଏକ ପାନ୍ଥଶାଳା । ପାନ୍ଥଶାଳାରେ କ୍ଷଣକପାଇଁ ବିଶ୍ରାମ କରି ପଥିକ ତାର ପଥ ଯାତ୍ରାକୁ ବିସ୍ମୃତ ହେଲାପରି ଅଥବା ଚକୋର ଚନ୍ଦ୍ରକୁ ଦେଖି ନିଜର ସତ୍ତା ଭୁଲିଗଲାପରି ମୁଁ ଏ ଜୀବନର ପାର୍ଥିବ ସୁଖ ସମ୍ଭୋଗରେ ମସ୍‌ଗୁଲ ରହି ମୋର ଯାତ୍ରାପଥ ବିସ୍ମୃତ ହେଲି । ମୁଁ ଲକ୍ଷ୍ୟଭ୍ରଷ୍ଟ, ଆଜିଯାଏ ସେହି ଲକ୍ଷ୍ୟକୁ ଖୋଜୁଛି ।

ହେ ସହଯାତ୍ରୀ, ଦୂରର ସେହି ଅନ୍ତିମ ପାନ୍ଥଶାଳା ( last resting place, divine goal)କୁ ତୁମ ଭିତରୁ କେହି ଦେଖିଛ କି ? ସକଳ ମାଧୁର୍ଯ୍ୟରେ ସେ ମଣ୍ଡିତ । ତୁମେ କହି ପାରିବ ଏ ଯାତ୍ରାର ଶେଷ କେବେ ?

ବିବୃତି—ପକ୍‌କା ରହସ୍ୟବାଦ ଏଠି ଫୁଟି ଉଠିଛି ବୋଲି ପାଠକ ପ୍ରଥମେ ଭାବିବା ସ୍ୱାଭାବିକ । କବିଙ୍କର ଆତ୍ମା ସେହି ପରମାତ୍ମା ସଙ୍ଗେ ମିଶିଯିବା ପାଇଁ ଚେଷ୍ଟିତ । ମଣିଷ ଯେପରି ରାତେ ବିଶ୍ରାମ ନେଇ ପୁଣି ଯାତ୍ରା ଆରମ୍ଭ କଲାପରି, ପଥିକ ପାନ୍ଥଶାଳାରେ ରହିବାପାଇଁ ଆଶ୍ରୟ ନେଇ ସକାଳୁ ପୁଣି ଯାତ୍ରା ଆରମ୍ଭ କଲାପରି, କବି ଏ ଜୀବନ ପାନ୍ଥଶାଳାରେ ବର୍ତ୍ତମାନ ବିଶ୍ରାମ ନେଉଛନ୍ତି । ମୃତ୍ୟୁପରେ ତାଙ୍କର ଆତ୍ମା ପୁଣି ସେହି ଅନନ୍ତ ପଥରେ ଧାବିତ ହେବ । କବି କେତେଥର ଜନ୍ମ ନେଇଲେଣି, କେତେଥର ମଲେଣି, ଆତ୍ମା ତଥାପି ସେହି ପରମାତ୍ମା ପାଖକୁ ଧାଉଁଛି । ପୂର୍ବ ଜୀବନର ସ୍ମୃତି ଯଦିଓ ଜଡ଼ଙ୍କ ଜୀବନରେ ଅତି କ୍ଷୀଣ, ତଥାପି କବିଙ୍କ ଜୀବନରେ ସେ ସବୁର ପ୍ରଭାବ ରହିଛି । ଅତୀତ ଜୀବନର ସ୍ମୃତି ସହିତ ବର୍ତ୍ତମାନ ଜୀବନର କର୍ମମୟ ବୃତ୍ତିକୁ ତୁଳନାକରି କବି ଏକ ଅତୀବ ସମନ୍ୱୟ ସମ୍ପାଦନ କରିବାର ଚେଷ୍ଟା କରିଛନ୍ତି ।

ବୈକୁଣ୍ଠନାଥଙ୍କର ଏ କବିତା ପାରସୀ କବି ଓମରଖୈୟାମଙ୍କର 'କାରୱାନ୍ ସିରାଇ' କବିତାର ପ୍ରଭାବରେ ପ୍ରଭାବିତ । ପାନ୍ଥଶାଳାର ଧାରଣା କବି ସେହି କବିତାରୁ ହିଁ ଗ୍ରହଣ କରିଛନ୍ତି । ତା ଛଡ଼ା John Bynyanଙ୍କର Pilgrim's Progress ନାମକ ରଚନାର ପ୍ରଭାବ ମଧ୍ୟ ଏଥିରେ ପଡ଼ି ଥାଇ ପାରେ ବୋଲି ଅନୁମାନ କରାଯାଏ ।

———

**ବାସର ଗୃହ—**

ସରଳାର୍ଥ—ମଧୁଶଯ୍ୟା ଘର । ପ୍ରଣୟୀ ଓ ପ୍ରଣୟିନୀ ପରସ୍ପରର ଯୌନ ପିପାସା ଚରିତାର୍ଥ କରି ପାରନ୍ତି । ରାତି [illegible] ଅପୂର୍ବ ।

ନାୟିକା ଚଞ୍ଚଳ ସ୍ୱରରେ ପ୍ରଣୟୀକୁ କହୁଛି—ତୁମେ କଣ ମତେ ମନେ ରଖିବ ? ଆଜିକାର ଏଇ କ୍ଷଣିକ ସୁଖ, ସମ୍ଭୋଗ, ପ୍ରେମ ପ୍ରୀତି, ଏ ମଧୁ ଯାମିନୀ, ଏସବୁ କଣ ସତରେ ତୁମର ମନେ ପଡ଼ିବ ? ଜୀବନର ବାସ୍ତବ ଜଞ୍ଜାଳରେ ପଡ଼ି ମତେ ଭୁଲି ଯିବନି ? ପ୍ରଣୟୀ ନାୟିକାର ଉପରେ ଝାଙ୍କିଦେଇ କହୁଛି---ନା ଭୁଲିବି ନାହିଁ, ତୁମର ସେ କମ୍ପ୍ର ଅଧରର କମ୍ପନ, ତୁଷାରଶୁଭ୍ର ବାହୁବଲ୍ଲରୀ, ଅନାବୃତ ବକ୍ଷ, ଏ ସବୁ ମୋର ମନେ ରହିବ । ଅନୁରୋଧ କରୁଛି, ଆଉଥରେ ତୁମର ସେ ଉନ୍ମୀଳିତ ଆଖିପତା ଖୋଲି, ଆଉଥରେ ମତେ ମଧୁର କଟାକ୍ଷ ମାର, ମୁଁ ଆଉ ଥରେ ତୁମକୁ ଚୁମ୍ବନ କରେ । ବାସ୍ତବ ଜଞ୍ଜାଳର ଭୟ ? ନା, ସେ ଭୟ ମୋର ନାହିଁ ; ମତେ ଯେଉଁ ଈଶ୍ୱର ଜନ୍ମ ଦେଇଛନ୍ତି, ସେ ଜଞ୍ଜାଳର ଦାୟିତ୍ୱ ତାଙ୍କର । ଶ୍ରାନ୍ତ ପଥିକର ପ୍ରାଣରେ ନୂତନ ଉତ୍ସାହର ଉଦ୍ଦୀପନା ଖେଳାଏ ସେଇ ମଙ୍ଗଳମୟଙ୍କର ମଙ୍ଗଳମୟ ଶକ୍ତି ; ଆମେ ଆଜି ଏ ଘରେ ଯେଉଁ ପ୍ରେମ-କ୍ରୀଡ଼ା କଲେ, ତାହା କେବଳ ତାଙ୍କରି କରୁଣାରୁ ସମ୍ଭବ ହୋଇଛି । ତେଣୁ, ହେ ପ୍ରିୟା ! ଆଜି ଯାମିନୀର ମାଧୁର୍ଯ୍ୟ ଲାଗି ସେଇ ଅନନ୍ତ ସ୍ରଷ୍ଟା ଉଦ୍ଦେଶ୍ୟରେ ନମସ୍କାର କର ।

ମୁଁ ଅନନ୍ତ ପଥର ଯାତ୍ରୀ । ତୁମ ପାଖରେ ବାନ୍ଧିହୋଇ ରହି ପାରିବ ନି । ତୁମର ଏ ଘର ପଥିକର ପାନ୍ଥଶାଳା ପରି । ସାଗରର ପରପାରର କଳ୍ପିତ ସୁସୌଧ ପରି ତୁମର ଏ ଘର ; ତୁମେ ଏ ଘରର ରାଜକନ୍ୟା । ଚିତ୍ରିତ ପାନ୍ଥଶାଳାର ମାଧୁର୍ଯ୍ୟରେ ମୁଗ୍ଧ ହୋଇ ପଥିକ ତା'ର କ୍ଲାନ୍ତି ଭୁଲିଗଲା ପରି ତୁମର ସେ ସ୍ୱେଦମଣ୍ଡିତ ବଦନର ଅବଲୋକନରେ ମୁଁ ଯେ ଜୀବନରେ ଶତ ନିର୍ଯ୍ୟାତନା ସହୁଛି, ତା

ଭୁଲିଯାଏ । ଜୀବନରେ ସଂଗ୍ରାମ ଆସୁ, ବ୍ୟଥା ଆସୁ, ବେଦନା ଆସୁ, ମୋର ଭୟ ନାହିଁ । ତୁମେ ମୋର ଅର୍ଦ୍ଧାଙ୍ଗିନୀ, ତୁମେ ମୋର ସୁଖ, ଦୁଃଖର ସାଥୀ । ତୁମର ଆଶ୍ୱାସନା ଲାଭକରି ମୁଁ ସମସ୍ତ ସ୍ରୋତରେ ମୋ ଜୀବନ ତରୀକୁ ବାହିବାକୁ ସମର୍ଥ ହେବି । ମୁଁ ବୁଝୁଛି— ଜୀବନ ସଂଗ୍ରାମରେ ଯଦି ହାରିଯାଏ, ଯଦି ବିଫଳକାମ ହୁଏ, ଯଦି ଆହତ ହୁଏ, ତେବେ ଫେରି ଆସିଲେ ମତେ ତୁମର ଏଇ ବାସର ଗୃହରେ ବିଶ୍ରାମ ଦେବ ନା ?

ତା' ପରେ ପ୍ରଣୟିନୀ କହୁଛି, ମୁଁ ଜାଣେ ତୁମେ ଅନନ୍ତ ପଥର ଯାତ୍ରୀ, ସ୍ୱଳ୍ପକାଳ ତମର ଧାମ । ତଥାପି ଜାଣିନି ଯେ ମୁଁ ତୁମକୁ ମୋ ଜୀବନ ଉତ୍ସର୍ଗ କରି ବୁଝି ପାରୁନି । ମୁଁ ଧନ୍ୟ, କାରଣ ତୁମେ ମୋ ଜୀବନର ଦାନ ଗ୍ରହଣ କରିଛ । ତୁମେ ନ ରୁହ, ନ ରହିବ, ମୁଁ ତୁମକୁ ବାଧ୍ୟ କରୁନି ; ଅଧିକନ୍ତୁ ମୁଁ ନିଜକୁ ଉପହାସ କରୁଥିଲି, କାରଣ ସବୁଦିନ ପାଇଁ ମୋର ଏ ସଙ୍କୀର୍ଣ୍ଣ ପ୍ରେମର ଗଣ୍ଡି ଭିତରେ ତୁମକୁ ବାନ୍ଧି ରଖିବାର ନିଷ୍ଫଳ ଚେଷ୍ଟା ମୁଁ କରୁଥିଲି । ତୁମ ଲାଗି ଦ୍ୱାର ଖୋଲି ଦେଉଛି, ତୁମେ ଯାଇପାର ।

ପାହାନ୍ତା ହୋଇ ଆସିଲାଣି । ନାୟିକା କ୍ଳାନ୍ତ ହୋଇ ଶଯ୍ୟାରେ ଶାୟିତା । ଚନ୍ଦ୍ର ଅସ୍ତ ପ୍ରାୟ । ପୂର୍ବ ଦାମରେ ରକ୍ତିମ ଶିଶୁପ୍ରଭାତ ଝଲକ ଦେଖାଯାଉଛି । ପାହାନ୍ତି ପବନ ସୁଲୁ ସୁଲୁ ହୋଇ ବହୁଛି । କିନ୍ତୁ ପ୍ରଣୟୀ ପାଖରେ ଏ ଆନନ୍ଦ ବ୍ୟର୍ଥତାରେ ପର୍ଯ୍ୟବସିତ । ସେ ଅନନ୍ତ ପଥର ଯାତ୍ରୀ । ସେ ପଥଯାତ୍ରାର ଆହ୍ୱାନ ପୁଣି ତା କାନରେ ବାଜିଲାଣି । ଶୂନ୍ୟପଥ ଆଡୁ ପୁଣି କିଏ ଆହ୍ୱାନ କରୁଛି—'ସକଳ ତ୍ୟାଗକରି ଚାଲିଆ ।'

ହେ ମୋର ଶାନ୍ତିଦା ବଧୂ, ଆଉ ଥରେ ଉଠ ବୋଲି ତମକୁ ଡାକିବ କି ? ପ୍ରଭାତର ଶିଖା ଲିଭି ଲିଭି ଆସିଲାଣି ତୁମକୁ ଡାକିବାର ମୋର ଉଦ୍‌ବେଗ କମି କମି ଆସୁଛି—ଏ ପ୍ରୀତିର ବନ୍ଧନ କ୍ଷୀଣ ହୋଇ ଯାଉଛି କ୍ରମଶଃ । ଯାଉଛି । ଜାଣେନା କେବେ ଫେରିବ ; ଫେରିଲା ବେଳେ ତୁମ ଅଧରରେ ଏଇ ସ୍ୱର୍ଗୀ ହାସ୍ୟ ଥିବଟି ?

ବକ୍ତବ୍ୟ—କବିତାରେ ରହସ୍ୟବାଦ ଓ ଦୁଃଖବାଦ ଏକା-ଧାରରେ ପ୍ରକାଶଲାଭ କରିଛି ବୋଲି ମନେ ହୁଏ । Romantic ବୈକୁଣ୍ଠନାଥ ପାର୍ଥିବ ଭୋଗ ବିଳାସରେ ବୁଡ଼ିଥିଲେହେଁ ଆତ୍ମା ଆଉ ପରମାତ୍ମାର ସମ୍ପର୍କକୁ ଆଦୌ ଭୁଲି ପାରୁ ନାହାନ୍ତି । ରହସ୍ୟବାଦର ସଙ୍କେତ ସୂତ୍ରରେ ତାଙ୍କ ଆତ୍ମା ସେଇ ଅନନ୍ତ ଯାତ୍ରା ପଥରେ ଗୁଳିବାକୁ ସତତ ବ୍ୟଗ୍ର । ସେ ବୁଝି ପାରୁଛନ୍ତି ଏ ସଂସାର ଅଳୀକ, ତୁଚ୍ଛ, ମୋହ ମାୟାର ସମଷ୍ଟି । ତଥାପି ସେ ତାକୁ ଏଡ଼ି ପାରୁନାହାନ୍ତି । ପ୍ରଣୟିନୀ କ୍ଳାନ୍ତ ହୋଇ ଶାନ୍ତିରେ ଆଖି ବୁଜିଲା ବେଳକୁ ଏ ତାକୁ ଆଉ ଥରେ ପାଇଁ ବାନ୍ଧି ରଖୁଛନ୍ତି ; କିନ୍ତୁ "କନ୍ଦନେ ଡାକଇ ଦୂରପଥ ଅବିରଳ, ସକଳ ତ୍ୟାଗି ଦ୍ୱାର ବନ-ବାସୀ ଚଳ" ଶେଷରେ କବିଙ୍କ ଆଖିରୁ କାମ୍ନିକ ମୋହର ପରଦା କାଢ଼ି ଦେବାକୁ ସକ୍ଷମ ହୋଇଛି । ସେ ବୁଝି ପାରିଛନ୍ତି !

—*—

**ଶିଶୁସୃଷ୍ଟି—**

ସରଳାର୍ଥ—ଶିଶୁ ମାନବ କୋଳରେ ଭଗବାନଙ୍କର ଏକ ସ୍ୱର୍ଗୀୟ ଦାନ । ବହିର ଅନ୍ତିମ ସ୍ତରରେ ତୁଷାର ବର୍ଷି ମଧୁଲୁ ହୃଦୟକୁ ଏକ କମଳ ପତ୍ରିକର ଯେପରି ପ୍ରତିବେଷ କରେ, ତାକୁ

ଅବସର ପ୍ରଖରତାରେ ସ୍ପର୍ଶ ନାହିଁ । ସେହିପରି ଶିଶୁ ହେଉଛି ସୃଷ୍ଟିର ଉଷାକାଳ ସଦୃଶ । ଶିଶୁ ତାର କୋମଳତା ଓ ଲୀଳାମୟତା ପାଇଁ ମାନବ ନିକଟରେ ସୃଷ୍ଟିରେ ଉଚ୍ଚାର ସ୍ଥାନ ନେଇଛି । ଶିଶୁର ହସ ଚନ୍ଦ୍ରର କୋମଳତା ପରି ନିର୍ମଳ ଏବଂ ଲୀଳାମୟ, ଦରୋଟିକଥା ପୃଥ୍ୱୀର ଶତ ପ୍ରହେଳିକାଠାରୁ ଶୁଭ୍ର ଆଉ ସୁନ୍ଦର । ସେ କଥା ଶୁଣିଲେ ଜୀବନର ଅନ୍ତରେ ଯେ ମୃତ୍ୟୁ ଅଛି, ଏ କଥା ମନୁଷ୍ୟ ଭୁଲିଯାଏ, ଜୀବନଟା ନିତ୍ୟ ମନେ ହୁଏ । ଶିଶୁର ସେ ଅପରୂପ ରୂପ ଦର୍ଶନରେ ମାନବ କ୍ଷଣିକ ପାଇଁ ଭୁଲିଯାଏ ଦୁଃଖ, ଦୈନ୍ୟ, ହାହାକାର ଆଉ ଯନ୍ତ୍ରଣାର ନିଷ୍ପେଷଣ ।

ଶିଶୁ, ତୁ ମୋର ଜୀବନ ଲକ୍ଷ୍ୟ, ଜୀବନର ଧ୍ରୁବତାରା ! ସଂସାରର ମାୟା ମୋହ ମୁଁ ଛିଣ୍ଡାଇବାକୁ ବସିଥିଲି, କିନ୍ତୁ ମୁଁ ଦେଖୁଛି ତୋ ଦ୍ୱାରା ସେ ପୁଣି ଯୋଡ଼ି ହୋଇଗଲାଣି । ଆଜି ମୁଁ ଆଉ କାହା କଥା ଶୁଣିବନି । ଜୀବନ ସଂଗ୍ରାମରେ ମୁଁ ଯେ ଆଜି ପରାସ୍ତ, ସେ କଥା ମୁଁ ବୁଝି ମଧ୍ୟ ବୁଝି ପାରୁନି । ତୋର ଏଇ ଯେଉଁ ଅର୍ଥହୀନ ଦରୋଟି କଥା ତାକୁଇ ମୁଁ କାଙ୍ଗାଳ ମୋ ଜୀବନର ଅମୂଲ୍ୟ ସମ୍ପଦ ରୂପେ ସାଇତି ରଖିବ ।

ଜୀବନର ସକଳ ଶ୍ରାନ୍ତି ଚିନ୍ତା ଆଜି ମୋ ପାଖରେ ତୁଚ୍ଛ । ଜୀବନର ବେସୁରା ଗୀତ ଆଜି ସୁର ଧରିଛି । ଆଜି ମୋର ଜୀବନ ପୂର୍ଣ୍ଣ । ଜୀର୍ଣ୍ଣ ଏବଂ ପୁରାତନ ବିଲୟ ପ୍ରାପ୍ତ ହୁଏ ; ତା ଜାଗାରେ ଦେଖାଦିଏ ନୂତନ । ଇଏ ହିଁ ଲଚ୍ଛି; ସୃଷ୍ଟିର ଭଏ ଚିରନ୍ତନ ନିୟମ । ମଣିଷ ମରୁଛି, ପୁଣି ନୂଆ ମଣିଷ ବି ଜନ୍ମ ହେଉଛି । ମୁଁ ପୁରାତନ ମୃତ୍ୟୁପଥର ଯାତ୍ରୀ । ଜୀବନବ୍ୟାପୀ ସନ୍ତାନର ମୁଖ ଦେଖି ନ ଥିଲି, ଜୀବନ ଅନ୍ଧକାର ଥିଲା । ନୂତନ ଆଲୋକରେ ଉଦ୍ଭାସିତ କଲା

ଥିଏ ? ଏଇ ଶିଶୁ, ମୁଁ ନିଃସ୍ୱ, ଜୀବନର ସମ୍ବଳ ମୋର ଆଶୀର୍ବାଦ, ତାହାଙ୍କ ହାତେ ଦେଉଛି ।

ବସ୍ତୁତ—ଜୀବନ, ମରଣ—ଇଏ ବୁଲୁଛି । ଶିଶୁଟିଏ ଜନ୍ମହେଲେ ପରିବାରଟିଯ କେତେ ଆନନ୍ଦିତ ହୁଅନ୍ତି, ତାହା ପ୍ରତ୍ୟେକ ଗୃହସ୍ଥହିଁ ବୁଝି ପାରିବେ । ବୈକୁଣ୍ଠନାଥଙ୍କର ଏ ପ୍ରକାର କବିତା ରଚନା ନୂଆ ନୁହେଁ । ଓଡ଼ିଆ ସାହିତ୍ୟରେ ଏ ଧରଣର ଏବଂ ଏହାଠାରୁ ଉଚ୍ଚସ୍ତରର ଅନେକ କବିତା ଅଛି । ଏ କବିତାରେ ପ୍ରଚ୍ଛନ୍ନଥିବା ଦର୍ଶନ ତତ୍ତ୍ୱକୁ ବିଶ୍ଳେଷଣ କରିବାର କଥା । ଶିଶୁସୃଷ୍ଟି ମାନବ ଅନ୍ତରରେ ଆନନ୍ଦର ପୂଆର ଛୁଟାଏ, ଏହାହିଁ ସେ ପ୍ରବୁଦ୍ଧ କରିଛନ୍ତି । ସାଂସାରିକ ଜଞ୍ଜାଳ, ଚିନ୍ତା, ଦୁଃଖ ଆଉ ଅନୁଶୋଚନା ଯେ ଶିଶୁର ଧାରେ ହସ ଆଗରେ ଅତି ତୁଚ୍ଛ, ଏହା କଣ କମ୍ କଥା ? କବିତାର କେତେକ ସ୍ଥଳରେ ରହସ୍ୟବାଦର ସ୍ପର୍ଶ ଅଛି (ତୁଚ୍ଛ ଶୋଚନା, ତୁଚ୍ଛ ସକଳ ଖେଦ…ଇତ୍ୟାଦି) ।

ଇଂଲିଶ ସାହିତ୍ୟରେ Words`Worth ହେଉଛନ୍ତି Nature Mystic । ପ୍ରକୃତିର ବାସ୍ତବତାକୁ ରୂପ ଦେବାରେ ତାଙ୍କର ଲେଖନୀ ସର୍ବଦା ମୁଖର । ତାଙ୍କର Ode to Intimation of Immortality କବିତାର ପ୍ରଭାବ ଏଥିରେ ସ୍ପଷ୍ଟ ପଡ଼ିଛି ବୋଲି ମନେ ହୁଏ । "ଆସରେ ବତ୍ସ ସକଳ ଜୀବନ ଆଶା…" ଇତ୍ୟାଦି ସେଇ ପ୍ରଭାବର ପ୍ରତିଛବି । ଉତ୍କଳକବି ମଧୁସୂଦନଙ୍କର 'ଶିଶୁ' କବିତାର ପରୋକ୍ଷ ପ୍ରଭାବ ଏଥିରେ ପଡ଼ିଥାଇ ପାରେ କିନ୍ତୁ ଦର୍ଶନର ଛାପ ନାହିଁ ।

—*—

## ଯାତ୍ରା ସଂଗୀତ—

ସରଳାର୍ଥ—ହେ ପ୍ରଭୁ, ଜୀବନର ନାନା ଆକାଂକ୍ଷା ନାନା-ପ୍ରକାରେ ଧାରଣ କରିଛ, ମୋର ଭ୍ରାନ୍ତି, ମୋର ଅଜ୍ଞତା ତମେ ହରଣ କରିଛ, ସୁତରାଂ ମୁଁ ଆଜ କହି ପାରିବ ନାହିଁ ଯେ ତମେ ମତେ କିଛି ଦେଇନ । ଜନ୍ମରୁ ଅଦ୍ୟାବଧି ନାନା ଦୃଶ୍ୟ ଦୃଷ୍ଟାନ୍ତର ସଂସ୍ପର୍ଶରେ ମୁଁ ଆସିଛି । ସେ ସବୁ କ୍ଷଣିକ, ମୁଁ ପାର୍ଥିବ—ସେ ସବୁର କ୍ଷଣସ୍ଥାୟିତ୍ୱ ନ ବୁଝି ତାହାକୁ ହୃଦୟର ଗଣ୍ଠି କରି ଧରିଛି । ସାଂସାରିକ ମୋହ, ମାୟା, ଜଞ୍ଜାଳର ବେଷ୍ଟନୀରେ ମୁଁ ଏପରି ବନ୍ଦୀ ଯେ ତମର ସାମାନ୍ୟ ମାତ୍ର ଅନୁକମ୍ପା ଲାଭକରି ଏ ସବୁରୁ ନିଷ୍କୃତି ପାଇଲେ ମଧ୍ୟ ତଥାପି ଏ ମର୍ତ୍ତ୍ୟରେ ମୁଁ ରହିବାକୁ ଚାହୁଁଛି ।

ଜୀବନର ପ୍ରିୟତମା, ତୁମର ସ୍ୱର୍ଗୀୟ ପ୍ରେମଦ୍ୱାରା ମୋ ପ୍ରାଣକୁ ପୂର୍ଣ୍ଣ କରିଚ । ଦୁଃଖ ଯନ୍ତ୍ରଣାରେ ମୁଁ ଯେତେବେଳେ ବିକଳ ହୋଇ ପଡ଼ୁଛି, ଈଶ୍ୱରଙ୍କୁ ପ୍ରାର୍ଥନା କରିବାପାଇଁ ଭାଷା ପାଉନି, ତୁମେ ସେତେବେଳେ ତୁମର ସେ ଅନାବିଳ ରୂପର ତରଙ୍ଗ ମୋ ଆଖିରେ ଖେଳାଇ ବନ୍ଧୁ ବନ୍ଦନା ପାଇଁ ମୋ ଆକୁଳ କଣ୍ଠରେ ଭାଷା ଦେଇଚ ; ଈଶ୍ୱରଙ୍କ ବନ୍ଦନା ମୁଁ ଗାଇବି, ସେଥିପାଇଁ ମୋର ଏ ଜୀବନବୀଣାରେ ତୁମେ ରାଗିଣୀ ତୋଳିଛ—କିନ୍ତୁ ମୁଁ ମୂର୍ଖ ସେ ଚିରନ୍ତନ ସୁଖକୁ ଅବହେଳା କରି କ୍ଷଣିକ ଦୈହିକ ସୁଖରେ ମାତିଲି । ସଂସାରର ମିଥ୍ୟା ହେଣ୍ଡୁରେ ଜୀବନଟା ମରଣର ପଣ୍ୟ ରୂପେ ଗୃହୀତ । ମୁଁ ଏଡ଼େ ମୂର୍ଖ, ଏଥିପ୍ରତି ସାବଧାନ ନ ହୋଇ ମୋ ଜୀବନର ଅମୂଲ୍ୟ ସାରସତ୍ତାକୁ ଏ ହେଣ୍ଡୁରେ ମୂଲ୍ୟ କରି ବସିଲି ।

ଦୁଃଖ ନୈରାଶ୍ୟର ଅଗ୍ନି ଦାହ ମଧ୍ୟରେ ମୋ ଜୀବନ କଣ୍ଟକମୟ ଅକାଳରେ ଝଡ଼ି ପଡ଼ୁଛି ; ତଥାପି ମୋର ଚିନ୍ତା ନାହିଁ, କାରଣ ମୁଁ ସେହି ସତ୍ୟର ସନ୍ଧାନ ପାଇଛି ଯେ ସତ୍ୟ ଏ କାଳ୍ପନିକ ଦୁଃଖ ଯନ୍ତ୍ରଣାରେ ପ୍ରଭାବିତ ହେବନି । ସେ ସତ୍ୟର ମାଧୁରୀ ମୋର ହୃଦୟରେ ପ୍ରତିଧ୍ୱନିତ ହେଉଛି । ରେ ଭ୍ରାନ୍ତ ଆତ୍ମନ୍, ଜୀବନ ଓ ମରଣ ସେଇ ଏକ ପରମେଶ୍ୱରଙ୍କର ଲୀଳା; ଇଚ୍ଛାକଲେ ସେ ମାନବକୁ ଆଲୋକର ସନ୍ଧାନ ଦେଇ ପାରନ୍ତି । ଇଚ୍ଛାକଲେ ଅନ୍ଧକାରର ବହ୍ନିଶିଖାରେ ନିକ୍ଷେପ କରିପାରନ୍ତି ; ସେ ମହାଦାତା, ତାଙ୍କର ସାମାନ୍ୟ ସ୍ପର୍ଶରେ ମୃତବତ୍ ମନୁଷ୍ୟ ନୂତନ ଆଶା ଆକାଙ୍କ୍ଷାରେ ନବଜୀବନ ଲାଭକରେ—ତେବେ ଆଉ ଚିନ୍ତା କାହିଁକି ?

ରେ ମନ, ସେଇ ନିତ୍ୟ ଗୋଲକ ପ୍ରତି ଦୃଷ୍ଟିପାତ କର । ନିତ୍ୟ ଆନନ୍ଦର ଝରଣା ସେଠି ; ଜଞ୍ଜାଳର ଯାତ୍ରାପଥ ତୋର କ୍ଷଣକେ ଶେଷ ହେବ । ତୁ ନିଷ୍କୃତି ପାଇବୁ । ମୋ ଜୀବନର ଲକ୍ଷ୍ୟ ସେଇ ଅନନ୍ତସତ୍ତା । ମୋର ଜୀବନ ତରୀ ତାଙ୍କ ସେଇ ଚିନ୍ମୟ ପ୍ରେମ ସାଗରରେ ବହମାନ ହେଉ ।

ବିବୃତି— ଆତ୍ମା ସହିତ ପରମାତ୍ମାର ମିଳନପାଇଁ କବି ବ୍ୟଗ୍ରତା ପ୍ରକାଶ କରିଛନ୍ତି । ଜୀବନର ନିତ୍ୟ ସଉଦା ତୁଚ୍ଛ ଓ ଅଳୀକ, ଏହା ସେ ବୁଝି ପାରିଛନ୍ତି । ସେଥିପାଇଁ ସେ ଅନୁତାପ କରିଛନ୍ତି କିନ୍ତୁ ଆଶା ହରାଇ ନାହାନ୍ତି । ଜୀବନର ଶେଷ ଦୀପଶିଖା ଲିଭିଯିବା ପୂର୍ବରୁ ସେ ଭଗବତ୍ ଆରାଧନାରେ ନିଜକୁ ନିୟୋଗ ରଖିବେ ବୋଲି ନିଷ୍ପତ୍ତି କରିଛନ୍ତି ।

ଏ କବିତାରେ ଇଂଲଣ୍ଡର କବି Shelley ଙ୍କର Ode to the West Wind କବିତାର ପ୍ରଭାବ ପଡ଼ିଛି ଏବଂ ଯାହା ସଙ୍ଗୀତର "ପଲ୍ଲବ ତରୁ ମୁଁ ଗୋ ପଳିତ ମୋ ପତର..." ପଦରେ ସେ ପ୍ରଭାବ ସ୍ପଷ୍ଟ । ଜୀବନର ଅକାଳ ବିନଷ୍ଟତା ଭାବନାରେ ସେ ମ୍ରିୟମାଣ ; ତଥାପି ଆଶାବାଦର ଝଙ୍କାର ଉଠାଇ ତାଙ୍କର ଲେଖନୀ ଗାଇଛି, "ନାହିଁ ତ ତେବେ ତିଳେ ଶୋଚନା ଖେଦ ମୋର, ହୃଦୟୁ ମଣି ମୋର ସାଗର ଅତଳରେ...ଇତ୍ୟାଦି" । ରବୀନ୍ଦ୍ରନାଥଙ୍କର ପ୍ରଭାବ ମଧ୍ୟ ଏଥିରେ ଅଛି ବୋଲି କେହି କେହି କହନ୍ତି । ତା ଛଡ଼ା ଭକ୍ତକବି ମଧୁସୂଦନଙ୍କର 'ସ୍ତବ' କବିତାର ଭକ୍ତିମତ୍ତା ଓ ଦର୍ଶନ ତତ୍ତ୍ୱ ଏଥିରେ ପ୍ରସଙ୍ଗମାତ୍ରାରେ ପ୍ରତିଫଳିତ ହୋଇଛି ବୋଲି କୁହାଯାଇପାରେ । ୱାଡ଼ସ୍‌ୱାର୍ଥଙ୍କର 'ଓଡ୍ ଅନ୍ ଟିଣ୍ଟରନାବ୍ୱ' କବିତାର ଛାୟା ମଧ୍ୟ ଏ କବିତାରେ ଦେଖିବାକୁ ମିଳେ ।

ସ୍ୱର ଯୋଜନା ଓ ଶବ୍ଦବିନ୍ୟାସ ଭଙ୍ଗୀପାଇଁ କବିତାଟି ପାଠକ ଚିତ୍ତକୁ ବିହ୍ୱଳିତ କରି ତୋଳିବ, ଏକଥା ନିଶ୍ଚିତ ରୂପେ କୁହାଯାଇ ପାରେ ।

— * —

# ବୈକୁଣ୍ଠନାଥ ନକଲି ରହସ୍ୟବାଦୀ ?

କେବଳ କାବ୍ୟସଞ୍ଚୟନ ବା କେତେକ ସ୍ୱଳ୍ପସଂଖ୍ୟକ କବିତାକୁ ଭିତ୍ତି କରି ବୈକୁଣ୍ଠନାଥଙ୍କ ମାନସିକ ଚିନ୍ତାଧାରା ଉପରେ ଟିପ୍ପଣୀ କାଟିବା ଅପେକ୍ଷା ତାଙ୍କର ସମୁଦାୟ କବିତାଗୁଡ଼ିକର ଆଲୋଚନା କରି ତାଙ୍କ ରହସ୍ୟବାଦିତା ସମ୍ପର୍କରେ ମତପ୍ରକାଶ କରିବା ଅଧିକ ଯୁକ୍ତି ଯୁକ୍ତ । କୌଣସି ଲେଖକଙ୍କର ସମୁଦାୟ ରଚନା ଭିତରୁ ଅଧିକାଂଶଥିରେ ଯେଉଁ ମନୋଭାବ ବା ଚିନ୍ତାଧାରା ଫୁଟି ଉଠୁଥାଏ ମୁଖ୍ୟତଃ ତାଆରି ଉପରେ ଜୋରଦେଇ ତାଙ୍କ ସମ୍ବନ୍ଧରେ ଅନୁରୂପ ମତ ଦିଆଯାଏ ।

ବୈକୁଣ୍ଠନାଥଙ୍କର ତଥା କଥିତ ରହସ୍ୟବାଦ ତାଙ୍କର ନିଜସ୍ୱ ନୁହେଁ । ଦେଶୀ ଓ ବିଦେଶୀ ଅନ୍ୟାନ୍ୟ ରହସ୍ୟବାଦୀ କବିଙ୍କ ଲେଖା ପଢ଼ି ପଢ଼ି ତାଙ୍କର ସେଇ ଧରଣର ଏକ ଅନୁଭୂତି ଆସୁଛି ଖୁବ୍ ଅଳ୍ପ ସମୟ ପାଇଁ, ଯାହାର ସ୍ପର୍ଶ ତାଙ୍କର ସାମାନ୍ୟ କେତୋଟି କବିତାକୁ ଛାଡ଼ିଦେଲେ ଆଉ କେଉଁଥିରେ ନଥିବାର ପାଠକେ ନିଜେ ଉପଲବ୍ଧି କରିବେ । ଈଶ୍ୱରଙ୍କ ଉପରେ ତାଙ୍କର ଆସ୍ଥା ଓ ଆଶ୍ୱାସ ନାହିଁ, ଏ କଥା ସେ ବହୁ କବିତାରେ ଲେଖିଛନ୍ତି, ଯୋଉଟାକି ରହସ୍ୟବାଦର ପ୍ରତିକୂଳରେ ଯାଏ

ବାସ୍ତବତାର ଛଦ୍ମବେଶରେ ସେ କ୍ରମଶଃ ଅତି ବାସ୍ତବ ହୋଇ ପଡ଼ି-ଛନ୍ତି । ତାଙ୍କର ଏବକାର ଜଡ଼ତାଗୁଡ଼ିକ ପୁଞ୍ଜିବାଦର ସହୋଦ ଦର ଶଙ୍କାରେ କଲେଣି । ତାଙ୍କର ଚିନ୍ତାଧାରାର ମଙ୍ଗଳକୁ ସେ ଆଜି ଠିକ୍ ରଖି ପାରୁନାହାନ୍ତି । ତଥାପି ଅସଲ ରହସ୍ୟବାଦର ଗୋଟାଏ ଗୁଣ ତାଙ୍କର କେତେକ କବିତାରେ ଥିବା ହେତୁ ବୈକୁଣ୍ଠନାଥଙ୍କ ରହସ୍ୟବାଦିତା ସମ୍ପର୍କରେ ସଠିକ୍ ଟିପ୍ପଣୀ ଦେବାକୁ ହେଲେ ଆମେ କହିବା ସେ ଜଣେ Pseudo Mystic ବା ଦେଶୀ ଭାଷାରେ କହିଲେ ନକଲି ରହସ୍ୟବାଦୀ । ତାଙ୍କ ରଚନାଶ୍ରେଣୀର ମୁଖ୍ୟ ଚିନ୍ତାଧାରା ତାଙ୍କର ବାସ୍ତବବାଦିତା ଓ ପ୍ରଗତିବାଦିତା ସମ୍ପର୍କରେ ଯେତେ ଦୃଢ଼ ପ୍ରମାଣ ଦିଏ, ତାଙ୍କର ରହସ୍ୟବାଦିତା ସମ୍ପର୍କରେ ସେତେ ଦିଏ ନା ।



ଆପଣଙ୍କ ଅବସର ସମୟକୁ ସରସ ଓ ସତେଜ କରି ତୋଳିବ

# ନିଶୀଥ ପ୍ରେମ

(ଗଳ୍ପଗୁଚ୍ଛ)

---

କାଲି ପଢ଼ିବେ, ଏହି ଲେଖକଙ୍କର—

୧ - ନୀଳପଦ୍ମ ( କୋଷକାବ୍ୟ )
୨ - ପ୍ରଗତିଶୀଳ ସାହିତ୍ୟ ( ସମାଲୋଚନା )
୩ - ଗଦ୍ୟକବିତା (ଆଧୁନିକ କବିତାଗୁଚ୍ଛ )
୪ - ମୋ ଜୀବନର ଅନୁଭୂତି ( ଉପନ୍ୟାସ )

---

......ଅସ୍ତ୍ରଯୌବନା, ଚୃଳୁଣୀ ବଦନା ଦାଲୁକର ଜୀବନ ଇତିହାସ । କଳଙ୍କିତ ଜୀବନର କରୁଣ ପରିସମାପ୍ତି, କିଏ ଜାଣିଥିଲା ଏମିତି ହେବ ? ଯୌବନର ମଦଗର୍ବରେ ନିଜେ ଅନ୍ଧ ହୋଇଥିଲା, ଭାବିଥିଲା ସମସ୍ତ ବି ଅନ୍ଧ । ଦୁନିଆକୁ ଠକିବାକୁ ଯାଇ ସେ ଆଜି ନିଜେ ଠକି ଯାଇଛି । ଯେଉଁ ବାବୁଙ୍କ ଭାଇକୁ ସେ ଅତି ବିଶ୍ବାସୀ ବୋଲି ଭାବିଥିଲା, ସେ'ବି ଯାଇଛି, ଆଉ ତା ସାଙ୍ଗରେ ତାର ସହୃଦୟ ମର୍କଟବଦନୀ ମଧ୍ୟ । ତଥାପି ସେ ଭାବୁଛି ତା ପାଖରୁ ରସ ସରିନି ; ଆଜି ମିନା ମଟର ଡ୍ରାଇଭର, ମୋହନର ଆଉ ଆସୁନାହାନ୍ତି, ରିକ୍ସାବାଲା ଆସିବେ ନିଶ୍ଚୟ ।

ସେ କିଏ ? ପରିଚୟ ଜାଣିବାକୁ ଚାହାନ୍ତି ?

ପଢ଼ନ୍ତୁ

# ମୋ ଜୀବନର ଅନୁଭୂତି

( ସମସ୍ୟାମୂଳକ ଉପନ୍ୟାସ )